କବିତା ପ୍ରବେଶିକା

## କୃତଜ୍ଞତା ସ୍ୱୀକାର

ଉତ୍କଳ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ମାଟ୍ରିକ୍ୟୁଲେଶନ
ପରୀକ୍ଷାର୍ଥୀମାନଙ୍କର ସୁବିଧା ପାଇଁ ଗଦ୍ୟ ଓ ପଦ୍ୟ ସାହିତ୍ୟ
ପୁସ୍ତକ ପ୍ରକାଶ କରିଥିଲେ । ୧୯୫୭ ମସିହା ଜୁନ୍
ମାସଠାରୁ ମାଧ୍ୟମିକ ଶିକ୍ଷାବୋର୍ଡ଼ ମାଟ୍ରିକ୍ୟୁଲେଶନ୍
ପରୀକ୍ଷା ପରିବର୍ତ୍ତେ ହାଇସ୍କୁଲ ସାର୍ଟିଫିକେଟ୍-
ପରୀକ୍ଷା ପରିଚାଳନା କଲେ । ପରୀକ୍ଷାର୍ଥୀ-
ମାନଙ୍କର ସୁବିଧାପାଇଁ ଗଦ୍ୟ ଓ ପଦ୍ୟ
ସାହିତ୍ୟ ପୁସ୍ତକ ପ୍ରକାଶ କରିବାକୁ
ଉତ୍କଳବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ
ଅନୁମତି ଦେଇ ଥିବାରୁ
ମାଧ୍ୟମିକ ଶିକ୍ଷାବୋର୍ଡ଼
ତାଙ୍କୁ ଆନ୍ତରିକ
କୃତଜ୍ଞତା ଜ୍ଞାପନ
କରୁଅଛନ୍ତି ।

ତା ୧ । ୫ । ୧୯୫୮ ମସିହା

# ସୂଚୀପତ୍ର

## ପ୍ରାଚୀନ ଓ ମଧ୍ୟଯୁଗର କବିତା

# କବିତା-ପ୍ରବେଶ

[ ୧ ]

## କେଶବ କୋଇଲି

( ସ୍ୱର୍ଗତ ମାର୍କଣ୍ଡ ଦାସ )

କୋଇଲି କେଶବ ଯେ ମଥୁରାକୁ ଗଲା ।
କାହ୍ନା ବୋଲେ 'ଗଲା ପୁଅ ବାହୁଡ଼ି ନଇଲା, ଲୋ କୋଇଲି ।୧।
କୋଇଲି ଖଣ୍ଡକ୍ଷୀର ଦେବ ମୁଁ କାହାକୁ ।
ଖାଇବାର ପୁଅ ଗଲା ମଥୁରାପୁରକୁ, ଲୋ କୋଇଲି ।୨।
କୋଇଲି ଗଲା ପୁଅ ବାହୁଡ଼ି ନଇଲା ।
ଗହନ ତ ବୃନ୍ଦାବନ ଶୋଭା ନ ପାଇଲା, ଲୋ କୋଇଲି ।୩।
କୋଇଲି ଘର ମୋର ନ ମଣନ୍ତି ନନ୍ଦ ।
ଘଟଣ ନ ହଣେ ପୁର ନ ଥିଲେ ଗୋବିନ୍ଦ, ଲୋ କୋଇଲି ।୪।
କୋଇଲି ନନ୍ଦ ଦେହ ପାଷାଣେ ଗଢ଼ିଲା ।
ନୟନେ କଜ୍ଜ୍ୱଳ ଦେଇ ରଥେ ବସାଇଲା, ଲୋ କୋଇଲି ।୫।
କୋଇଲି ଚଳୁଥାଇ କଟିରେ ମେଖଳା ।
ଚକିତ ହୋଇଲେ ଶୁଣି ଗୋପପୁର ବାଳୀ, ଲୋ କୋଇଲି ।୬।
କୋଇଲି ଘୁଣ୍ଟେକ ମୁଁ ମାଗଇ ପ୍ରଭୁବେ ।
ଘୁଡ଼ି ଅବା ଗଲେ କୃଷ୍ଣ ସେହି ପରସ୍ତାବେ, ଲୋ କୋଇଲି ।୭।
କୋଇଲି ଦୂତପଣେ ଅଇଲା ଅକ୍ରୂର ।
ଯାହା ବୋଲି ଭଣ୍ଡିନେଲା ବସାଇ ରଥର, ଲୋ କୋଇଲି ।୮।
କୋଇଲି ଝୁରି ଝୁରି ଲୁହ ନ ରହିଲା ।
ଝଗଡ଼ା ସାରିଣ କୃଷ୍ଣ ମଥୁରା ରହିଲା, ଲୋ କୋଇଲି ।୯।
କୋଇଲି ନିଶାକାଳେ ହରି ମାଗେ ଖୁନ୍ଦ ।
ନୟନ ଟେକିଣ ଚାହୁଁଥାନ୍ତି ନନ୍ଦ, ଲୋ କୋଇଲି ।୧୦।

କୋଇଲି ଟହ ଟହ ହସୁଥାନ୍ତି କୋଳେ ।
ଟଳ ଟଳ ହେଉଥାନ୍ତି ଝୁଲିବାର ବେଳେ, ଲୋ କୋଇଲି । ୧୧ ।

କୋଇଲି ଠଣ ଯେ ସୁନ୍ଦର ବେନି ପୋଏ ।
ଠକ ଭଣ୍ଡି ଗଲେ କୃଷ୍ଣ ନଇଲେ ବେଢ଼ାଏ, ଲୋ କୋଇଲି । ୧୨ ।

କୋଇଲି ଡାଳରେ ଖବଇ ଯେହ୍ନେ ଶାଖ
ଡାଳରନ୍ତ ଶୁଆ ପ୍ରାୟେ ଭାଷୁଥାନ୍ତି ହରି, ଲୋ କୋଇଲି । ୧୩ ।

କୋଇଲି ଡାକୁଛନ୍ତି ମାଆ ଯଶୋବନ୍ତୀ ।
ଡାକେ ହସାଇଲା ମୋର ପୁଅ ଶିଖିପଞ୍ଚ, ଲୋ କୋଇଲି । ୧୪ ।

କୋଇଲି ଅନେକ ହିଂସିଲା ଖଳ କଂସ ।
ଅଣହେଲା କଉଣ ଆପଣେ ଗଲା ନାଶ, ଲୋ କୋଇଲି । ୧୫ ।

କୋଇଲି ତନୁରେ ତା ଲେପଇ କୁଙ୍କୁମ ।
ଚନ୍ଦନ ଖେଳାଉଥାନ୍ତି ଭାଇ ବଳରାମ, ଲୋ କୋଇଲି । ୧୬ ।

କୋଇଲି ଥନ ଲାଗି କ୍ଷୀରପାନ ଦେଲି ।
ଅନ୍ତରକାଳକୁ ପୁଅ ଦେଖି ନ ପାରିଲି, ଲୋ କୋଇଲି । ୧୭ ।

କୋଇଲି ଦଉଡ଼ରେ ବାନ୍ଧିଲି ପୁଅକୁ ।
ଦାମୋଦର ରାଗେ ଗଲେ ମଥୁରାପୁରକୁ, ଲୋ କୋଇଲି । ୧୮ ।

କୋଇଲି ଧନ୍ୟ ସେହି ଦଇବଙ୍କ ନାଗ ।
ଧର୍ମ ଥିଲା ପୁଅ ଗୋଟି ନେଲାଇଲା ତାହାକି. ଲୋ କୋଇଲି । ୧୯ ।

କୋଇଲି ନ ଶୋଭଇ ଗୋପପୁର ମୋର ।
ନାରାୟଣ ଗଲେହନ୍ତି ମଥୁରା ନଗର, ଲୋ କୋଇଲି । ୨୦ ।

କୋଇଲି ପବନ ମୃଦୁଳ ମୋ ମାଧାଇ ।
ପବନ ମୁଁ ହେଉଥିଲି କୃଷ୍ଣମୁଖ ଗନ୍ଧେ, ଲୋ କୋଇଲି । ୨୧ ।

କୋଇଲି ଫଳିବାକୁ ନାହିଁ ମୋର ଆଶ ।
ଫଳିବାର ଫଳ ଗଲା ବସୁଦେବ ପାଶ, ଲୋ କୋଇଲି । ୨୨ ।

କୋଇଲ ବସ୍ତ୍ରତ ସମ୍ବଳ ତାଙ୍କ ଅଳ ।
ବଢ଼ାଇ ଶରଧା ସ୍ୱର୍ଗେ ଗଲେ ବଂନମାଳୀ, ଲୋ କୋଇଲା । ୨୩ ।
କୋଇଲ ଭଣ୍ଡି ମୋତେ ଗଲେ ବେନ ପୋଏ ।
ଭାଇ ତାଙ୍କ ବଳରାମ ନଇଲେ ବେଢ଼ାଏ, ଲୋ କୋଇଲା । ୨୪ ।
କୋଇଲ ମଥୁରାକୁ ଯିବ କ ମୁଁ ଧାଇଁ ।
ମାଧବ ମଧୁସୂଦନ ଆଣିବ କଢ଼ାଇ, ଲୋ କୋଇଲା । ୨୫ ।
କୋଇଲ ଯିବେ ସେ ଆସିବେ ବୋଲି ଗଲେ ।
ଜଗତଜୀବନ ପ୍ରଭୁ ବେଢ଼ାଏ ନଇଲେ, ଲୋ କୋଇଲା । ୨୬ ।
କୋଇଲ ରତ୍ନ ବସ୍ତ୍ର ଅଳଙ୍କାରମାନ
ରାମକୃଷ୍ଣ ଶ୍ରୀଅଙ୍ଗକୁ ଦିଶେ ଶୋଭବନ, ଲୋ କୋଇଲ । ୨୭ ।
କୋଇଲ ଲକ୍ଷ୍ମୀବନ୍ତ ଅଟେ ନାରାୟଣ ।
ଲଳାଟରେ ନାମ ଦେଲେ ସେ ଗର୍ଗ ବ୍ରାହ୍ମଣ, ଲୋ କୋଇଲା । ୨୮ ।
କୋଇଲ ବୃନ୍ଦାବନ ନ ଶୋଭଇ ମୋର ।
ବସ୍ତ୍ର କିଏ ଚରାଇବ ଯମୁନାର ତୀର, ଲୋ କୋଇଲ । ୨୯ ।
କୋଇଲ ଶ୍ରୀମନ୍ତ ପୁରୁଷ ମୋ ମାଧୋଇ ।
ଶିଖରଙ୍ଗ ଗଲଦନୁ ନନ୍ଦ ହେଲେ ବାଇ, ଲୋ କୋଇଲା । ୩୦ ।
କୋଇଲ ଶଶୀ ଯେହ୍ନେ ଦିନୁ ଦିନ କ୍ଷୀଣ ।
ସେହିମତ କ୍ଷୀଣ ହେଲେ ମୋ ନନ୍ଦ ରାଜନ, ଲୋ କୋଇଲା । ୩୧ ।
କୋଇଲା ସାତ ଦିନ ଇନ୍ଦ୍ର ବୃଷ୍ଟି କଲା ।
ସପତ ବରଷ ପୁଅ ମନ୍ଦର ଧଇଲା, ଲୋ କୋଇଲା । ୩୨ ।
କୋଇଲ ହାଇ ସେ ମାରଇ ପୁନ ତୁଣ୍ଡ ।
ହୃଦୟେ ଦିଶିଲା ତାର ସପତ ବ୍ରହ୍ମାଣ୍ଡ, ଲୋ କୋଇଲା । ୩୩ ।
କୋଇଲ କ୍ଷନ୍ଦଣି ବନ୍ଦଣି ଭୂଜଦଣ୍ଡ ।
କ୍ଷମା କର ଦୋଷ ମୋର ଭଣେ ମାରକଣ୍ଡ, ଲୋ କୋଇଲା । ୩୪ ।

---

# ଏକଲବ୍ୟର ଗୁରୁଦକ୍ଷିଣା

( ସ୍ୱର୍ଗତ ଶୂଦ୍ରମୁନି ସାରଳା ଦାସଙ୍କ ମହାଭାରତରୁ )

ସେଥୁଁ ଅନନ୍ତରେ ଦ୍ରୋଣେ ବିଦ୍ୟା-ପୁତ୍ରନ୍ତ ହକାରି,
ବାବୁ ତୁମେ ଯାଅରେ ମୃଗୟାବନ ହେରି । ୧ ।
ଅଶ୍ୱତ୍ଥାମା ପ୍ରସବ ଯେ କୃପୀ ନାଶ ଗଲା,
ତାହାର ପ୍ରାଣତ୍ୟାଗ ଦିବସ ନିକଟ ହୋଇଲା । ୨ ।
ଗଣ୍ଡା ଗୋଟିଏକ ଆଣ ବାବୁ ବନୁ,
ଗୁରୁଙ୍କର ବଚନେ ଚଳନ୍ତ ସର୍ବ ତନୁ । ୩ ।
ପଶ୍ଚିମେ ଭୀମ ଅର୍ଜ୍ଜୁନ ଦକ୍ଷିଣେ ବୀର କର୍ଣ୍ଣ,
ଶତେ ସୋଦରନ୍ତ ଘେନି ଉତ୍ତରକୁ ଗଲା ଦୁର୍ଯ୍ୟୋଧନ । ୪ ।
ଭ୍ରମନ୍ତ କୁମାରେ ଯେ ଖେଦନ୍ତ ମୃଗାରି,
ତ୍ରିବିକଇ ନ ଗୁଡ଼ନ୍ତ ଗଣ୍ଡାର୍ଣ୍ଣବ ଲୋଡ଼ି । ୫ ।
ଦକ୍ଷିଣେ କର୍ଣ୍ଣ ଲୋଡ଼ି ନ ପାଇଲା ଗଣ୍ଡାର୍ଣ୍ଣବ,
ମୃଗଶୀର ଘେନି ଗୁରୁଙ୍କୁ ଦର୍ଶନ କଲା କରିଧେବ । ୬ ।
ପଶ୍ଚିମ କୋଣକେ ଗଲେ ଭୀମସେନ ଅର୍ଜ୍ଜୁନେ,
ଗଣ୍ଡା ଦୁଇଗୋଟା ଘେନି ଆସି ହୋଇଲେ ପାଞ୍ଚ ଦିନେ । ୭ ।
ଉତ୍ତରକଇଁ ଗଲେ ଯେ ଦୁର୍ଯ୍ୟୋଧନ ଶତେ ଭ୍ରାତ,
ଦେଖନ୍ତି, ବନ ଗହନେ ଯେ ଅନେକ ପରବତ । ୮ ।
ଲୋଡ଼ନ୍ତି ଗହନ ଅରଣ୍ୟେଣ ପଶି ଗଣ୍ଡା,
ଖେଦନ୍ତି କ୍ରମେଣ ହୋ ବିହରନ୍ତି ଦୁର୍ଦ୍ଦଣ୍ଡା । ୯ ।
ମଣିନାଗ ନାମେଣ ଯେ ଗୋଟିଏ ପରବତ,
ତହିଁର ତଳେଣ ଅଛି ଗୋଟିଏ ପାଣିଘାଟ । ୧୦ ।
ସେ ପାଣିଘାଟେଣ ଜଗି ଅଛନ୍ତି ଅନୁସରି,
ତହିଁର ନିକଟେ ଜାଗା ବେଣ୍ଟକାର ପୁରୀ । ୧୧ ।

ସେ ରାଜାର ଘରଣୀ ସାରଥୀ ନାମ ବୋଲ,
ସ୍ୱାମୀକି ବୋଇଲା ତୁ ଦୃଷ୍ଟି ଦେଇ ଥା ଆସି ପଲ୍ଲୀ । ୧୨ ।
ସ୍ନାହାନ କରି ମୁଁ ଆଣଇ ଜଳଘଟ ଗୋଟିଏ,
ଦ୍ୱାରକୁ ଚଲେ କରିଥାଅ ମୋହର ଆସିବା ଯାଏ । ୧୩ ।
ସ୍ୱାମୀକଇ ପ୍ରବୋଧି ସେ ଚଳଇ ଶବରୁଣୀ,
ସରୋବରରେ ପଶିଣ ଘଟେ ପୂରାଇଲା ପାଣି । ୧୪ ।
ଘଟ ଆଣି ତୀରେ ଥୋଇ ସାରିଲା ସ୍ନାହାନ,
କୂଳେଣ ଆସି ଚିନ୍ତାଇଲା ପଞ୍ଚ ପରିହରଣ । ୧୫ ।
ମଥାରେ ବସାଇଣ ପାଣିଘଟ ଗୋଟି,
ସିଂହଠାଣି ଜାଣି ଆସୁଇ ଲେଉଟି । ୧୬ ।

× × ×

ଶବରୁଣୀ ଦେଖିଣ ଧାଇଁଲେ ସର୍ବ ଦୁଷ୍ଟେ,
ବେଢିଣ ଶବରୁଣୀକି ଲେଉଡନ୍ତି ପାପିଷ୍ଟେ । ୧୯ ।

× × ×

ଉଚ୍ଚସ୍ୱରେ ଶୁଣିଲା ଯହୁଁ ଘରିଯାର ବାଣୀ,
ଆଖଡାର ବେଳେ ଜାର ଶବର ତାହା ଶୁଣି । ୨୨ ।
ହସ୍ତେ ଧନୁଶର ଘେନି ବାହାର କରାତ,
ଧାଇଁ ପ୍ରବେଶ ହୋଇଲା କୁରୁବୀରଙ୍କ ସମେତ । ୨୩ ।
ମହା ବିକଟାଳ ଜାଣି ଭଇରବ ମୂର୍ତ୍ତି,
ଡାକ ଦେଇ କହଇ, ରେ ତୁମ୍ଭେ ଅଟ କାହାର କଣ୍ଟି । ୨୪ ।
ଶୁଣି ପ୍ରଚଣ୍ଡ ମୂରତି ଯେ ଦୁଃଶାସନ ବୀର,
ପ୍ରତିଜ୍ଞା କରି ବୋଇଲା ତୁ କି ମରିବୁ ଶବର । ୨୫ ।
ଆମ୍ଭେ ସୋମବଂଶୀ ରେ ପୃଥିବୀ ଅଧିପତି,
ଏହାର ନିମନ୍ତେ ତୁରେ ହୋଇବୁ ପ୍ରାଣଘାତି । ୨୬ ।

ଦୁର୍ଦ୍ଧର ବଚନ ଶୁଣି ଜାଗ୍ର ବେଣ୍ଣକାର,
ଧନୁରେ ବସାଇଲା ଆକ୍ଷୋଷିଣ ଶର । ୨୭ ।
ଭୂମିକା ନାଗ୍ରଜ ଗୋଟି ଗ୍ରଢ଼ିଲା ଗୁରୁଙ୍କ ନାମ ଧରି,
ମଥାରେ ଘେନଲ୍ସ ଯେ ମୃତ୍ତିକା ଦ୍ରୋଣଙ୍କୁ ସୁମରି । ୨୮ ।
ଏକ ଉତ୍ତର ଶତେକ ଯେ ଅଛନ୍ତି କୁରୁବାରେ,
ଜଣକେ ଘୁଗ୍ଭେଇଲା ଶତେଶତେ ଶରେ । ୨୯ ।
ଅବକ୍ଷଣେ ବାଣ ଯନ୍ତୁଁ ବାନ୍ଧିଲା ମହାମନ୍ତ୍ରେ,
ଜଣକେ ଶତେ ଶତେ ପଡ଼ିଲା ନାଗ୍ରଜ କଗ୍ରତ ଲାଘବ ହସ୍ତେ । ୩୦ ।
ନିପଣ୍ଡ ଗଳ ଯେ ଶସ୍ତ୍ରର ଶର ଅସ୍ତ୍ର ଭେଦ,
ପଡ଼ିଲେ କୁରୁବାରେ ହୋ ରୁଧିର ବହେ ନଦୀ । ୩୧ ।
ସ୍ତ୍ରରଯାକୁ ଘେନଣ ଚଳଇ ବୀର ଜାଗ୍ର,
ଆପଣା ପଲ୍ଲୀରେ ଯାଇଁ ପ୍ରବେଶ ମହାବୀର । ୩୨ ।
ଦ୍ରୋଣେ ବାଟ ଗୃହାନ୍ତ ତହିଁ ଦୁର୍ଯୋଧନ ନଇଲା,
ପନ୍ଥା, ନରେପନ୍ତେ ଦଶ ଦିବସ ବହିଗଲା । ୩୩ ।
ସଙ୍ଗେଣ ଘେନଣ କର୍ଣ୍ଣ ଭୀମ କର୍ଷୀ,
ବାଟ ଅନୁସରି ଆସନ୍ତି ପାଗ୍ଭେଟି । ୩୪ ।
ପ୍ରବେଶ ହୋଇଲେ ଯାଇ ସରୋବର କୂଳେ,
ଯେସନେକ ବୃକ୍ଷେ ଲୋଟନ୍ତି ମହାବାତ କାଳେ । ୩୫ ।
ଦେଖିଲେ ନାଗ୍ରଜ ହୃଦେଣ ପଡ଼ି ପିଠି କଣ୍ଟକ ଫୁଟି,
ମହାଗାଢ଼ ଶରେ ପୃଥିରେ ଅଛଇ କଣ୍ଟି । ୩୬ ।
ଭୀମସେନ ଧାଇଁଯାଇଁ ଦେଖିଲାକ ଦୃଷ୍ଟି,
ସମସ୍ତେହେଁ ଶସ୍ତ୍ରଘାତେ ପଡ଼ି ଅଛନ୍ତି ହେ ଗୁରୁ । ୩୭ ।
ଭରଦ୍ୱାଜଙ୍କ ନନ୍ଦନ ଦେଖିଣ ବିସ୍ମୃରିଲେ,
ଏ ତ ଆମ୍ଭର ବିଦ୍ୟା ବୋଲି ଅର୍ଜୁନକୁ କହିଲେ । ୩୮ ।

ଦେଖନ କେ ବନସ୍ତେ ଅଛଇ ଫାଲଗୁନ,
ପର୍ଶୁରାମଙ୍କର ବିଦ୍ୟା କେ ଅଛଇ ଅବା ଯେନ । ୩୯ ।
ଆନଙ୍କୁ ଗୋଚର ନୁହଇ ଏ ବିଦ୍ୟା,
ମାନବେ ଗୋଚର କାହିଁ ଏସନେକ ପ୍ରସିଦ୍ଧା । ୪୦ ।
ଗୁରୁଙ୍କ ବଚନେ ଚଳାଇ ସବ୍ୟସାଚୀ,
ଦେଖିଲେ ଗହନ ବନେ ଶବରପଲ୍ଲୀ ଗୋଟିଏ ଅଛି । ୪୧ ।
କିରାତ ଆଖଡ଼ାସ୍ଥେ ପଠାକୁ ବିନ୍ଧଇ ବାଣ,
ଅର୍ଜ୍ଜୁନଙ୍କୁ ଦେଖିଣ ସେ ବାହାର ତତକ୍ଷଣ । ୪୨ ।
ହସ୍ତେଣ ଧାମଣାକାଠର ଧନୁ କଣ୍ଟାବାଉଂଶର ଗୁଣ,
କଟି ମେଖଳାସ୍ଥେ କୁଠାର ଫିରିକ ନାରାଜର ତୋଣ । ୪୩ ।
ଗଦର ଗଦର ବାକ୍ୟେଣ କସ ଗୋ କସ ବୋଲି,
ଅର୍ଜ୍ଜୁନ ଉପରକୁ ଆସୁଅଛି ପେଲି । ୪୪ ।
ଡ଼ାକ ଦିଅଇ କିରାତ ରୂପେ କାହାର କଣ୍ଠ ଅଟୁ,
ମୁହିଁ ବନଚର ମୋହର ଆଶ୍ରମେ କମ୍ପା ଭେଟୁ । ୪୫ ।
ଆଷ୍ୟ ଥାଉ ଭରସା କପାଳିଁ କରୁ ମରଣକୁ,
ମାରି ପନ୍ଥାଇବ ବଳି ଦେବଇଁ ଆଜ ତୁକୁ । ୪୬ ।
ଅର୍ଜ୍ଜୁନ ବୋଇଲେ ଶୁଣରେ କିରାତ,
ଏ ମୋହ ଭ୍ରାଥନ୍ତ କେ କଲା ଶରଘାତ । ୪୭ ।
ଅର୍ଜ୍ଜୁନ ବଚନ ଶୁଣି ଜାରଶବର କୋପେ,
ଧନୁରେ ନାରାଜେ ପ୍ରବୋଇଲା ପରିତାପେ । ୪୮ ।
ଆନୋଷି ଶର ଛିଣ୍ଡନ୍ତେଣ ଦେଖିଲା ଫାଲଗୁନ,
ଶବରକୁ ମାଇଲା ଦିବ୍ୟ ସହସ୍ର ଯେନ । ୪୯ ।
ଶରେଣ ଶର ପଡତାଲ ଦେହନ୍ତଣ ଅନନ୍ତ,
ଭଜି ସମସ୍ତ ସହସ୍ର ଚୂର୍ଣ୍ଣ ହୋଇ ଯାନ୍ତ । ୫୦ ।

ଶତେକ ନାରାଚ କୋପେ ପୂରାଇଣ ଜାବ,
ଅର୍ଜ୍ଜୁନ ଉପରକୁ ପେଶିଲା ମହାବୀର । ୫୧ ।
ଶତେକ ନାରାଚ ଯେ ପେଶିଲେ ଅର୍ଜ୍ଜୁନ,
ଛେଦଣ ପକାଇଲେ କବଚ ଶସ୍ତ୍ରମାନ । ୫୨ ।
କବଚ ଅର୍ଜ୍ଜୁନେ ହୋଇନ୍ତେ ଅନ୍ୟାଅନ,
ଶସ୍ତ୍ର ବଧାରେଣ କମ୍ପିଲା ମେଦିନୀ । ୫୩ ।
ଗୁଣଟଙ୍କାର ଘାଏ ଶୁଭଇ ଗୁରୁ ଘୋଷ,
ତ୍ରିଭୁବନ କମ୍ପଇ ଲାଗିଲା ବଡ଼ ତ୍ରାସ । ୫୪ ।
ଦ୍ରୋଣେ ଶୁଣିଲେ ଶବ୍ଦସ୍ତ୍ର ରବ ବାଣୀ,
କର୍ଣ୍ଣେ ଧ୍ୟାନ ଦେଇଣ ଧାଇଁଲେ ବୀରମଣି । ୫୫ ।
ଦେଖିଲେ ଅର୍ଜ୍ଜୁନ କବଚର ସମର,
ଜାବ ଅର୍ଜ୍ଜୁନଙ୍କୁ ପୂରାଇ ଅଛଇ ଶର । ୫୬ ।
ଦ୍ରୋଣେ ଭେଟିଲେ ଯାଇ ସମର କରନ୍ତି ବେନି,
କେହି କାହାକୁ ନ ଘୁଞ୍ଚନ୍ତି, ସମର ଅନ୍ୟାଅନ । ୫୭ ।
ଦ୍ରୋଣେ ପଚାରିଲେ ହୋ ରହ ରହ ବାବୁ,
କାହାର ଠାରୁଁ ତୁ ସାଧିଲୁ ଯେତେ ବିଦ୍ୟା ସବୁ । ୫୮ ।
କାହାର ଶିଷ୍ୟ ତୁ କେ ତୋହର ଗୁରୁ,
କାହାର ବିଦ୍ୟା ସାଧି ଯେତେକ ଯୁଦ୍ଧ କରୁ । ୫୯ ।
କବଚ ବୋଇଲା ଶୁଣ ହୋ ବ୍ରାହ୍ମଣ,
ମୋହର ବିଦ୍ୟାଗୁରୁ ଅଟନ୍ତି ନାତେ ଦ୍ରୋଣ । ୬୦ ।
ଗୁରୁ ସ୍ତମ୍ଭୀଭୂତ ହୋଇଲେ କବଚ ବଚନେ,
ଆମ୍ଭେ ସେ ଦ୍ରୋଣ ହୋ ଅଟୁ ବିଦ୍ୟମାନେ । ୬୧ ।
ବଦନ୍ତି ଦ୍ରୋଣେ କାହିଁ ଅଛନ୍ତି ତୋର ଗୁରୁ,
ଆମ୍ଭଙ୍କୁ ଦେଖାଣ ତୁ କାହାକୁ ସେବା କରୁ । ୬୨ ।

ଆଖଡ଼ାଶାଳକୁ ଜଡ଼ାଇଣ ନେଲ,
ମାଟିର ଦ୍ରୋଣକୁ ନେଇଣ ଭେଟାଇଲ । ୬୩ ।
ଯେ ସେ ମୋହର ଅଟନ୍ତି ଦ୍ରୋଣ ସିଦ୍ଧା,
ଯେହ୍ନାଙ୍କୁ ସେବ ମୁଁ ସାଧିଲି ସର୍ବ ବିଦ୍ୟା । ୬୪ ।
ଗୁରୁ ପୃଚ୍ଛାକଲେ କେମନ୍ତେଣ ସାଧି କଲୁ,
ଆମ୍ଭର ପୁତ୍ରଙ୍କୁ ତୁ ଦେଖିଲେଣ ମାଇଲୁ । ୬୫ ।
ବୋଲଇ କବଚ ମୁଁ ଗଲଇ ବାରୁଣାବନ୍ତେ,
ବୋଇଲି ସେ ବିଦ୍ୟା ଶିଖାଅ ଦ୍ରୋଣଗୁରୁ ମୋତେ । ୬୬ ।
ସୁତକେଶ୍ଟି ଦେବ ବୋଲେ ସେ ଦୟା ମୋତେ କଲା,
ଦୁର୍ଯ୍ୟୋଧନ ବୋଲେ ସେ ମୋତେ ବାହାର କରିଦେଲା । ୬୭ ।
ଅପମାନ ପାଇଣ ମୁଁ ତହୁଁ ଅଇଲି,
ବାରୁଣାବନ୍ତ ଠାରୁ ସେଠାକୁ ଲଟା କଟାଇଲି । ୬୮ ।
ଆଖଡ଼ା ସେ କଅଇଲି ପଲ୍ଲୀର ଦୁଆରେ,
ମୃତ୍ତିକା ଦ୍ରୋଣ ଥାପି ସାଧିଲି ସମରେ । ୬୯ ।
ସେହିଠାରେ ଥାଇ ଗୁହାଇଁ ବାରୁଣାବନ୍ତ ଆଖଡ଼ାକୁ,
ଦୃଷ୍ଟିପାତ କରୁଥାଇଁ ଦ୍ୱାଦଶ ଯୋଜନକୁ । ୭୦ ।
ଯେଉଁଣ ପାଦଗଣ୍ଡି କରନ୍ତି ଦ୍ରୋଣଗୁରୁ,
ମୁହିଁ ଏଥି ସାଧଇ ସମସ୍ତଙ୍କ ପାଦଗଣ୍ଡି କରୁ । ୭୧ ।
ଶୁଣିଣ ଦ୍ରୋଣେ ଯେ ପରମ ସାନନ୍ଦେ,
ଜାଗକୁ ଆଣି ବସାଇଲେ ସନ୍ନିଧେ । ୭୨ ।
ଆମ୍ଭେ ଦ୍ରୋଣ, ଏ ଅର୍ଜୁନ, ଭୀମ, କର୍ଣ୍ଣ,
ଯାହାକୁ ଶରଘାତ କଲୁ ସେହି ଦୁର୍ଯ୍ୟୋଧନ । ୭୩ ।
ଏମନ ବଚନ ଶୁଣି ବୀର ଜାଗ,
ଦ୍ରୋଣଙ୍କର ପଦ୍ମପାଦେ ପ୍ରଣିପାତ ମହାବୀର । ୭୪ ।

ଦ୍ରୋଣେ ବୋଇଲେ ତୁ ଆମ୍ଭର ବିଦ୍ୟାପୁତ୍ର ବାବୁ,
ଯେ ପୁତ୍ର ମାନନ୍ତ ମାଇଲୁ ସେ ଆମ୍ଭର ସବୁ । ୭୫ ।
ବିଦ୍ୟା ପରୀକ୍ଷା ବାବୁ ଜାଣିବା ଯୁଗତେ,
ପୁଣି ସେ ପୁତ୍ରମାନେ ଜୀବନ୍ତୁ ଯେମନ୍ତେ । ୭୬ ।
ଜାରୀକଇ ଯେଜନଣ ଗଲେ ସଂଗ୍ରାମ ଭୂମି,
ଜାରା ବୋଇଲା ଏଇକ୍ଷଣି ଜୀଆଁଇବି ସବୁ ସ୍ୱାମୀ । ୭୭ ।
ଧନୁରେ ବସାଇ ଜୀବନ୍ୟାସ ଶର କଲା ବୃଷ୍ଟି,
ମୋହ ଛାଡ଼ି ଉଠିଲେ କୁମର ଧୃଷ୍ଟବୃଷ୍ଟି । ୭୮ ।
ଦ୍ରୋଣଙ୍କର ପଦ୍ମପାଦେଣ ପରଣାମି,
ଶବର ଶରଘାତେଣ ପ୍ରାଣନାଶ ହୋଇଲୁ ଦେବ ସ୍ୱାମୀ । ୭୯ ।
ଦ୍ରୋଣ ପ୍ରାପ୍ତେ ଗୁରୁ ତୋଷି ଆମ୍ଭେ ବିଦ୍ୟା ଯେ ସାଧିଲୁ,
କିରାତ ମାତ୍ରକେ ଆମ୍ଭ ସମସ୍ତେ ସଂଗ୍ରାମେ କ୍ଷୟି ଗଲୁ । ୮୦ ।
ପର୍ଶୁରାମ ବିଦ୍ୟାରେ ତୁ ଆପଣେ ଗୁରୁ ଦ୍ରୋଣ,
ଅଭିବେ ଶିଖାଇଲ କି ଦେବ ନୋହିଲା କାରଣ । ୮୧ ।
ଧିକ ହୋଉ ଜୀବନ ଆମ୍ଭର କ୍ଷତ୍ରି ବୃତ୍ତେଣ କସ କାର୍ଯ୍ୟ,
ଜନମୁଖେ ଅପଖ୍ୟାତି ପାଇବୁ ବଡ଼ାଇ ଲାଜ । ୮୨ ।
ଦ୍ରୋଣେ ବୋଇଲେ ତୁମ୍ଭେ ନ ଭାଳ କିଛିହେଁ ଚିତ୍ତେ,
ଆମ୍ଭର ବିଦ୍ୟାପୁତ୍ର ଅଟଇ ଜାରା କିରାତେ । ୮୩ ।
ଏକ ବିଦ୍ୟାପ୍ରେଣ ଧ୍ୱଂସି ହୋଇଲ ଭ୍ରାତ ବେନି,
ଘରେ ଘରେ ଏକ ସୋଦରେ ହୋଇଲ ଅନ୍ୟାଅନି । ୮୪ ।
ଏଥିକଇ ଅଭିମାନ କରି ତ ନ ଯୋଗାଇ,
ଆମ୍ଭର ବିଦ୍ୟାପୁତ୍ର ଅଟଇ ହାଦେ ସ୍ନେହି । ୮୫ ।
ଚଣ୍ଡୀ ଦୁଇଗୋଟି ଯେ ଯେନଗଲା ପ୍ରଥମେ ଆଖଡ଼ାକୁ,
ତୁମ୍ଭେ ଅପମାନ କରି ଯେ ବାହାର କରିଦେଲ ଏହାକୁ । ୮୬ ।

ଦ୍ରୋଣଙ୍କର ବଚନେ ଦୁର୍ଯ୍ୟୋଧନ ପରମ ଶାନ୍ତ,
ଦ୍ରୋଣେ ବୋଇଲେ ବାବୁ ତୁ ବନେ ଥାଆ ନିଭ୍ରାନ୍ତ । ୮୭ ।
ଆମ୍ଭେ ଯାଉଅଛୁଁ ହସ୍ତିନା ଭୁବନକୁ,
ଜାରା ବୋଇଲା ଗୁରୁ ଦକ୍ଷିଣା ମାଗ ମୁକୁ । ୮୮ ।
ଶୁଣିଣ ଦ୍ରୋଣ ପରମ ସାନନ୍ଦ ଚିତ୍ତେ,
ଗୁରୁଦକ୍ଷିଣା ଶିଷ୍ୟଙ୍କୁ ଲାଗଇ ଯୁଗତେ । ୮୯ ।
ସତ୍ୟ କଲେ ତୋତେ ମାଗିବୁ ଦକ୍ଷିଣା
ଯୁଗେ ଯୁଗେ ରହିବ ତୋହର କହଣା । ୯୦ ।
ଜାରା ବୋଇଲା ସ୍ୱାମୀ ହେ ମୁହିଁ ସତ୍ୟ କଲଇଁ,
ମୋହର ଶିରକମଳ ମାଗିଲେହେଁ କାଟି ଦେବଇଁ । ୯୧ ।
ଜ୍ୟେଷ୍ଠ ଅଙ୍ଗୁଳି ଗୋଟି ଧଇଲେ ଗୁରୁ ଟାଣି,
ନାରାଚ ବନ୍ଧନ୍ତେ ହାତେ ତୋହର ନ ଥିବ କଟୁଣି । ୯୨ ।
ଚତୁର୍ଥ ଅଙ୍ଗୁଷ୍ଠିରେ ବାବୁ ବାନ୍ଧିବୁ ତୁ ଶର,
ଏତେକେ ଗୁରୁ ଦକ୍ଷିଣା ରେ ହୋଇବ ଆମ୍ଭର । ୯୩ ।
ଜାରା ବୋଇଲା ଗୁରୁ ହେ ଭସ୍ମ କଲ ମୁକୁ,
ମୁକୁଇ କଲଙ୍କ କଲ ଉଦ୍ଧାରିଲ ଏହାଙ୍କୁ । ୯୪ ।
ଯେବଣ ଅଭିମାନ କଲେ ମୋତେ ବାରୁଣାବନ୍ତେ,
ସେ କଥା ଖଣ୍ଡି ମୁଁ ଧରି ଅଛଇ ହୃଦଗତେ । ୯୫ ।
ମୁଇଁ ଯେ ନାଶ କରନ୍ତି ଦୁର୍ଯ୍ୟୋଧନର ବଂଶ,
କୁରୁବଳ ସମସ୍ତ ମୁହିଁ କରନ୍ତି ନା ଧ୍ୱଂସ । ୯୬ ।
ଜାଣିଣ ଏମାନଙ୍କୁ ରକ୍ଷା କଲ ଗୁରୁ ହେ,
ପରମ ମହାତ୍ମା ତୁ ଯେ ସଞ୍ଚିଲୁ ସନ୍ଦେହେ । ୯୭ ।
ଜାରାକୁ କଲ୍ୟାଣ କରି ରୁହାଇଲେ ଆଶ୍ରମେ,
ପ୍ରସନ୍ନ ହୋଇ ଗୁରୁ ଗଲେ ବାରୁଣାବନ୍ତ ଭୁବନେ । ୯୮ ।

## ଶ୍ରୀରାମଙ୍କ ସହିତ ଗୁହକର ମିଳନ

( ସ୍ୱର୍ଗତ ବଳରାମ ଦାସଙ୍କ ରାମାୟଣରୁ )

ରଥରେ ବସିଣ ରାମ ଚଳନ୍ତି ଯେ ଗଲେ ।
ସରସ୍ୱତୀ ନଦୀ ତୀରେ ତକ୍ଷଣେ ମିଳିଲେ । ୧ ।

ତାହା ପାର ହୋଇ ପଶିଲେ ସେ ଘୋର ବନ ।
ଗଙ୍ଗା ନଦୀ-କୂଳେ ରାମ ହୋଇଲେ ତକ୍ଷଣ । ୨ ।

ଶୃଙ୍ଗବେର-ପୁର ଅଟେ ତହିଁର ନିକଟ ।
ଗୁହକ ନାମେ ଶବର ବସାଇ ତହିଁ ରାଷ୍ଟ୍ର । ୩ ।

ସେ ଶବର ଅଟଇ ଯେ ଶ୍ରୀରାମ ମଇତ୍ର ।
ଶ୍ରୀରାମ ପାଶେ ମିଳିଲା ଆସି ସେ ତୁରିତ । ୪ ।

ସଙ୍ଗରେ ବଳ ତାହାର ହୋଇ ଅପ୍ରମିତ ।
ବିପରୀତ ବେଶେ ଯେ ସେମାନେ ମେଳନ୍ତି ତ । ୫ ।

କର୍ଣ୍ଣରେ ତାଡ଼କ ଯେ ବନ୍ଧଆ ପୁଞ୍ଜି ପୁଞ୍ଜି ।
ଲଲାଟରେ ଶୋଭନ୍ତି ଯେ ଗୁଞ୍ଜମାଳ ରଞ୍ଜି । ୬ ।
କେ ଖୋଷା ପାରନ୍ତି କେହୁ ବାହେ ଜୁଡ଼ା ବାନ୍ଧ ।
କାହାର ବେଣୀ ଅଛଇ କେହି ମୁଣ୍ଡ ବାନ୍ଧ । ୭ ।
ପିଠି କଟକ କାହାର ଲମ୍ବିଅଛି ଚୂଟ ।
ମନ୍ଦାର ଫୁଲେ ସୁନ୍ଦର ଦିଶେ କାହା ଜଟ । ୮ ।
କେ କାଣୀ-କଉଡ଼ିମାନ ମାଳ ମାଳ କରି ।
ଶରଧା ନିମନ୍ତେ କେ କଟିରେ ଅଛି ଭରି । ୯ ।
କାହାର ବାହୁରେ ଯେ ଟସର ରଙ୍ଗ ସୂତା ।
ଅଜଗର ଚର୍ମ କାହା ଗଳାରେ ପଇତା । ୧୦ ।
ନାକ ଫୋଡ଼ି ପିତ୍ତଳମୁଦି ଭରି ଅଛିଲ ।
ଲୁହା ଶିକୁଳି କାହାର ଭୁଜରେ ଶୋଭଇ । ୧୧ ।

କାହାର ଶିରେ ଝୋପର ମୟୂରର କଣ୍ଠା ।
ଭଲୁଙ୍କର ଚର୍ମେ କେହୁ ମଣ୍ଡି ଅଛୁ ଅଣ୍ଟା । ୧୨ ।
କାହାର ଅଣ୍ଟାରେ ଘଣ୍ଟାମାଳ ଧ୍ୱନି କରି ।
କାହାର ଚରଣେ ପୁଣି ବାଜଇ ଘାଗୁରି । ୧୩ ।
ଖାଙ୍କର କେଶ କାହାର ତମା ତମା ଆଖି ।
ଭଲ ଭଲ ଲୋକେ ଯେ ଡରନ୍ତି ତାଙ୍କୁ ଦେଖି । ୧୪ ।
କାହାର ନଖ ଆରକ୍ତ ଦେହରେ ଲାଗଇ ।
ପିଙ୍ଗଳ କେଶ ଦେଖିଲେ ମନେ ତ୍ରାସ ପାଇ । ୧୫ ।
କାହା ନାକ-ପୁଡ଼ାରେ ବାହାରେ ଦଶେ ବାଳ ।
ତହିଁ ଗୁନ୍ଥା ହେଲା ପ୍ରାୟେ ଦଶେ ଗୁଞ୍ଜାମାଳ । ୧୬ ।
ଦେହର ରୋମକୁ ଯେ ଦେଖିଣ ଭୟ କରି ।
କାହାରି କାହାରି ଘଷା ବୃଦ୍ଧି ତ ନ ପାରି । ୧୭ ।
କାହାର ବାଳରେ କେହୁ ଜଟ ପାକୁଅଛୁ ।
ଖଣ୍ଡି ଖଣ୍ଡି କରି ପୋଡ଼ ମାଂସ କେ ଖାଉଛୁ । ୧୮ ।
ବିଭୂତିରେ ବିଲେପନ କାହାର ଶରୀର ।
ଗବ-ତେଲେ କାହା ମୁଣ୍ଡବାଳ ଜର ଜର । ୧୯ ।
କାହା ଶରୀରେ ଶୋଭାପାଏ ଇଟାଗୁଣ୍ଡି ।
ରଙ୍ଗମାଟି ଦେଇ କେ ଶରୀର ଥୋଏ ମଣ୍ଡି । ୨୦ ।
କେହୁ ଲଟା ଗୁଡ଼ିଆଇ ଥୋଇଥାଇ ପାଏ ।
ହାଣ୍ଡିଭଙ୍ଗା ଡାଳକୁ ଯେ ଘଙ୍ଗିଣ ଥୋକାଏ । ୨୧ ।
ଧାମଣା କାଠର କେହୁ କରିଣ କୋଦଣ୍ଡ ।
ଗୋରୁଚର୍ମ ତୁଣ ଯେ ନାହାଳ ବେନି କାଣ୍ଡ । ୨୨ ।
ଏକ କରେ କୁଠାର, କେ ଧନୁ କରେ ଦେଇ ।
କେ କରେ ଦେଇ ଅଛଇ ଭଙ୍ଗା ଡାଳ ବେନି । ୨୩

ମୂଷଳ ମୁଦଗର ଶର ଯାଠିକ ପ୍ରହାର ।
ଶିକଳ ଲଗାଇ କେହ୍ନ କୁକୁରକୁ ଧର । ୨୪ ।
ଅଣ୍ଟାର ମେଖଳା କେହ୍ନ କିଙ୍କିଣ ଝୁଙ୍କନ୍ତ ।
ତୂଣୀରରୁ କାଣ୍ଡ କେ କାଢ଼ିଣ ସଳଖନ୍ତ । ୨୫ ।

ଢାଲଗର କରଇ କେ ବାଟେ ଯାଉ ଯାଉ ।
ମାର ମାର ବୋଲି କେ ଯୁଝନ୍ତ ଧାଇଁ ଧାଇଁ । ୨୬

ଦଶ ଲକ୍ଷ ପଦାତି ଘେନିଣ ଗୁହ ବୀର ।
ଦରଶନ କଲା ଆସି ଶ୍ରୀରାମ ପଯୂର । ୨୭ ।

କର ଯୋଡ଼ିଣ ରାମଙ୍କୁ ପଚାରଇ ବାଣୀ
କେବଣ କାରଣେ ଏହି ବେଶେ ରଘୁମଣି । ୨୮ ।

ଶ୍ରୀରାମ ବୋଇଲେ ଶୁଣ ହେ ମୋହର ସଖା ।
ଯେବଣ କାରଣେ ମୁଁ ଯେ ଅଇଲଇଁ ଏକା । ୨୯ ।

ପିତା ଦଶରଥ ମୋତେ ରାଜ୍ୟ ଦେବା କଲା ।
କୈକେୟୀ ଜନନୀ ତାହା ପିତାଙ୍କୁ ମାଗିଲା । ୩୦ ।

ଚଉଦ ବରଷ ମୁଁ ବୁଲିବ ଘୋର ବନେ ।
ଭରତ ଯେ ଅଯୋଧ୍ୟାକୁ ପାଳିବ ବିଧାନେ । ୩୧ ।

ତେଣୁ ସେ ହେ ମଇହ ଅଇଲୁ ଘୋରବନେ ।
ସଙ୍ଗତରେ ସୀତା ଲକ୍ଷ୍ମଣ ଏ ବେନି ଜନେ । ୩୨ ।

ସୁମନ୍ତ୍ର ଯେ ବାହୁଡ଼ାଇ ନେବ ଏବେ ରଥ ।
ଆମ୍ଭେ ଆଶ୍ରୟ କରିବୁ ବନ ପରବତ । ୩୩ ।

ଶୁଣିଣ ସେ ମହାବ୍ୟଥା ପାଇଲା ଶବର
ଶ୍ରୀରାମଚନ୍ଦ୍ର ହୋ ତୁମ୍ଭେ ମୋର ବୋଲକର । ୩୪ ।

---

# ବର୍ଷା ଓ ଶରତ ବର୍ଣ୍ଣନା

( ସ୍ୱର୍ଗତ ଭକ୍ତକବି ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ଭାଗବତ ଦଶମ ସ୍କନ୍ଧ ଏକବିଂଶ ଅଧ୍ୟାୟରୁ )

ଏବେ ଗ୍ରୀଷମ କାଳ ଗଲା । ବରଷା ଋତୁ ପ୍ରକାଶିଲା । ୬।
ସକଳ ଋତୁଙ୍କର ସାର । ଶସ୍ୟ ସମ୍ପଦ ମଞ୍ଜପୁର । ୭।
ମେଘେ ମିଳିଲେ ଶୂନ୍ୟ ପଥେ । ବିଜୁଳି ଶବଦ ସଙ୍ଗତେ । ୮।
ଭୂମି ସାଗର ଶୂନ୍ୟେ ବ୍ୟାପୀ । ନୀଳଜୀମୂତ ବିଶ୍ୱରୂପୀ । ୯।
ଯେମନ୍ତେ ନିବିଡ଼ ଆକାଶ । ଭୂମିର ରସ ଅଷ୍ଟମାସ ।୧୦।
ଆଦିତ୍ୟ କରିଥିଲା ଗ୍ରାସ । ସେ ତାପ କଲା ମେଘ ନାଶ ।୧୧।
ମହୀମଣ୍ଡଳ ଦୁଃଖ ଋହିଁ । ଜଳ ଛାଡ଼ିଲା ତୋଷ ହୋଇ ।୧୨।
ଘୋର ଶବଦେ ମେଘମାଳ । ଗର୍ଜିଣ ବରଷନ୍ତି ଜଳ ।୧୩।
ପ୍ରାଣୀ ଜୀବନ ଜଳରାଶି । କରୁଣା ଚିତ୍ତରେ ବରଷି ।୧୪।
ପୃଥିବୀ ରବି ରଶ୍ମି ଗ୍ରାସେ । ତାପିତ ଥିଲା ଅଷ୍ଟମାସେ ।୧୫।
ଜଳ ପାଇଲେ ତୋଷ ଚିତ୍ତେ । ତପସ୍ୱୀ ଜନଙ୍କର ମତେ ।୧୬।
ତପସ୍ୟା ଫଳ ଯେହ୍ନେ ପାଇ । ଭୁଞ୍ଜନ୍ତି ଅତି ସୁଖୀ ହୋଇ ।୧୭।
ଖଦ୍ୟୋତ କୀଟ ନିଶାମୁଖେ । ଜଗତ ଆବୋରିଲେ ସୁଖେ ।୧୮।
ପାଷାଣ୍ଡେ ଯେହ୍ନେ କଳିଯୁଗେ । ବେଦ ନିନ୍ଦନ୍ତି ଯୋଗମାର୍ଗେ ।୧୯।
ମଣ୍ଡୂକେ ମେଘନାଦ ଶୁଣି । ଗର୍ଜନ୍ତି ଆବୋରିଣ ପାଣି ।୨୦।
ଅଳପ ନଦୀଏ ପୂରିଲେ । ଲମ୍ପଟ ମତେ ଉଛୁଳିଲେ ।୨୧।
ନାନା ପ୍ରକାରେ ଶସ୍ୟ ରାଶି । ଏଣେ ପୂରିତ ମହୀ ଦିଶି ।୨୨।
ଛତ୍ରୁ ଯେ ଛତ୍ରପାପୁ ହୋଇ । ରାଜାର ପ୍ରାପ୍ୟେ ଦିଶେ ମହୀ ।୨୩।
ଶସ୍ୟ ସମ୍ପଦ କ୍ଷେତ୍ର ମତେ । ଦେଖି ସାନନ୍ଦ ପ୍ରାଣୀ ଚିତ୍ତେ ।୨୪।
ଅଶେଷ ଜୀବ ଜଳସ୍ଥଳେ । ଜଳ ଲଭିଲେ କୁତୂହଳେ ।୨୫।

ବନକୁନ୍ଦନ ପୁଷ୍ଟ ହୋଇ । ହରି ସେବକ ପ୍ରାପ୍ତେ ଦେହୀ ।୨୬।
ସମୁଦ୍ର ନଦୀଙ୍କର ମେଳ । ଲୋଡ଼ି ପାଇଲେ ପୂର୍ଣ୍ଣଜଳ ।୨୭।
ଅଳପ ଯୋଗୀଙ୍କର ଚିତ୍ତ । ଯେହ୍ନେ ଚଞ୍ଚଳଗୁଣେ ଗ୍ରସ୍ତ ।୨୮।
ପର୍ବତେ ଜଳଧାରାଚୟ । ପଡ଼ନ୍ତେ ନ କରନ୍ତି ଭୟ ।୨୯।
କୃଷ୍ଣଆଶ୍ରିତ ପ୍ରାଣୀ ଯେହ୍ନେ । ଦୁଃଖିତ ନୁହନ୍ତି ବ୍ୟସନେ ।୩୦।
ପଥ ହୋଇଲା ତୃଣମୟ । ବାଟରେ ନ ମିଳିଲା ଥୟ ।୩୧।
ବ୍ରାହ୍ମଣ ବେଦ ପାସୋରିଲେ । ଯେମନ୍ତ ହୁଅନ୍ତି ପଶୁରିଲେ ।୩୨।
ଜଗତବନ୍ଧୁ ମେଘମାଳେ । ବିଜୁଳି ନ ରହେ ନିଶ୍ଚଳେ ।୩୩।
ଗୁଣୀ ପୁରୁଷଙ୍କର କୁଳେ । କାମୀ ମନ ଯେହ୍ନେ ଟଳେ ।୩୪।
ଶବଦ କୁଳେ ଇନ୍ଦ୍ର ଚାପ । ଗଗନେ ଶ୍ୱେତ ପୀତ ରୂପ ।୩୫।
ଗର୍ଜନ୍ତି ଗୁଣେ ହୋଇ ମୃତ । ନିର୍ଗୁଣ ପୁରୁଷ ଯେମନ୍ତ ।୩୬।
ଚନ୍ଦ୍ର ନ ଦିଶେ ମେଘାଚ୍ଛନ୍ନେ । ମିଥ୍ୟା ବଚନେ ସତ୍ୟ ଯେହ୍ନେ ।୩୭।
ମୟୂରେ ଗିରିଶୃଙ୍ଗେ ଥାଇ । ନୃତ୍ୟ କରନ୍ତି ମେଘ ଚାହିଁ । ।୩୮।
ଅନ୍ଧଥି ଦେଖି ବିବେକନେ । ଯେସନେ ତୋଷ ହୁଅନ୍ତି ମନେ ।୩୯।
ବୃକ୍ଷଙ୍କ ମୂଳେ ଜଳଶ୍ରେଣୀ । ଫଳ ପଲ୍ଲବ ଯେ ପ୍ରଶଂସି ।୪୦।
ତପର ଅନ୍ତେ ଫଳ ପାଇ । ତପସ୍ୱୀ ଯେହ୍ନେ ହୃଷ୍ଟ ହୋଇ ।୪୧।
ବରଷା ଦେଖି ନରନାରୀ । ଯେସନେ ଗୃହେ ବାସ କରି ।୪୨।
ଜଳ ପ୍ରବାହେ ବନ୍ଧ ଭଙ୍ଗେ । ଯେହ୍ନେ ପାଷାଣ୍ଡେ ବେଦମାର୍ଗେ ।୪୩।
ମେଘ ପବନ ଯୋଗେ ବେଢ଼ି । ଅମୃତ ସ୍ରାପ୍ତେ ଜଳ ଛାଡ଼ି ।୪୪।
ବିପ୍ରଙ୍କ ବୋଲେ ମହୀପାଳେ । ଯେହ୍ନେ ଦିଅନ୍ତି ଦାନକାଳେ ।୪୫।
ବରଷାରସେ ବନଭୂଇଁ । ଖର୍ଜୁର ଜମ୍ବୁମୟ ହୋଇ ।୪୬।
ଗୋରୁଗୋପାଳ ସଙ୍ଗେ ଘେନ । ବନେ ବିଜୟ ଅନ୍ତର୍ଯାମୀ ।୪୭।
ଗାଈଏ ସ୍ତନଭର ହୋଇ । କର୍ଦ୍ଦମେ ନ ପାରନ୍ତି ଯାଇ ।୪୮।
କୃଷ୍ଣର ଡାକ ଶୁଣି କର୍ଣ୍ଣେ । ନିକଟେ ମିଳିଲେ ବଦନେ ।୪୯।

ବନରେ ଯେତେ ଜନ୍ତୁ ଥିଲେ । ଗିରି କାନନ ଆଶ୍ରେ କଲେ ।୫୦।
ସକଳେ ପକ୍ଷେ ମଧୁଦ୍ରବ୍ୟ । ବରଷା ଋତୁର ସ୍ୱଭାବ ।୫୧।
ଗାଈ ଚରାନ୍ତି ବୃନ୍ଦାବନ । ଭକ୍ଷନ୍ତି କନ୍ଦମୂଳମାନ ।୫୨।
ବସନ୍ତି ବୃକ୍ଷଙ୍କର ତଳେ । ଦିନ ହରନ୍ତି ବୃଷ୍ଟିବେଳେ ।୫୩।
ଦଧି ଅନ୍ନଙ୍କୁ ଘରୁ ଆଣି । ଜଳ ନିକଟେ ଚକ୍ରପାଣି ।୫୪।
ଗୋପାଳ ମେଳେ ବେନି ଭାଇ । ଭୁଞ୍ଜନ୍ତି ଶିଳା ପରେ ଥୋଇ ।୫୫।
କୋମଳ ଘାସେ ପଶୁମାନେ । ଶୁଅନ୍ତି ନିଦ୍ରିତ ଲୋଚନେ ।୫୬।
ବରଷା କାଳ ଦେଖି ହରି । ଆପଣା ତେଜକୁ ପ୍ରଶଂସି ।୫୭।
ବନେ ବୁଲନ୍ତି ନନ୍ଦବାଳ । ପ୍ରବେଶ ଶରଦର କାଳ ।୫୮।
ଶୁକ୍ଳ ମେଘ ଯେ ଶୂନ୍ୟେ ଦିଶି । ନିଷ୍ଠୁର ପବନ ପ୍ରକାଶି ।୫୯।
ଭ୍ରଷ୍ଟ ଯୋଗୀଙ୍କ ଚିତ୍ତ ଯେହ୍ନେ । ପୁଣି ନିଶ୍ଚଳ ଯୋଗଧ୍ୟାନେ ।୬୦।
ଶରଦ ଭୟେ ମେଘ ଗଲେ । ଆକାଶ ନିର୍ମଳ ଦିଶିଲେ ।୬୧।
ନାନା ଜୀବଙ୍କର ଗହଳ । ଜଳୁ ହରିଲେ ପଙ୍କ ମଳ ।୬୨।
ହରି ଭକତି ବଳେ ଯେହ୍ନେ । ପାତକ ନ ଲାଗଇ ମନେ ।୬୩।
ସକଳ ଜଳ ଛାଡ଼ି ମେଘେ । ଶୁଭ୍ର ଦିଶିଲେ ଶୂନ୍ୟମାର୍ଗେ ।୬୪।
ସଂସାର ମୋହ ଛାଡ଼ି ଜନେ । ଯେହ୍ନେ ଦିଶନ୍ତି ଯୋଗ ଧ୍ୟାନେ ।୬୫।
ପର୍ବତେ ଯେତେ ଜଳ ଥିଲା । ସଞ୍ଚରି ଭୂମିରେ ପଡ଼ିଲା ।୬୬।
ଜ୍ଞାନ ଅମୃତ ତୋଷ ହୋଇ । ଶିଷ୍ୟଙ୍କୁ ଗୁରୁ ଯେହ୍ନେ କହି ।୬୭।
ଅଳପ ଜଳେ ଜନ୍ତୁ ଥାଇ । ରବି କିରଣେ ଭୟ ପାଇ ।୬୮।
ଜୀବନ ହେଲୁ ଦିନ କ୍ଷୀଣ । ଦରିଦ୍ର କୁଟୁମ୍ବ ଯେସନ ।୬୯।
ଗମ୍ଭୀର ଜଳେ ମୀନ ଥାନ୍ତି । ଶିଶିର ବୃଷ୍ଟି ନ ଜାଣନ୍ତି ।୭୦।
ଜଳେ ରମନ୍ତି ତୋଷଚିତ୍ତେ । ଅଜ୍ଞାନୀ ଜନଙ୍କର ମତେ ।୭୧।
ଭୂମିର ପଙ୍କ ଧୀରେ ଧୀରେ । ଶୁଖିଲେ ଶରଦ ଶିଶିରେ ।୭୨।
ଯେସନେ ଯୋଗ ଲକ୍ଷ୍ୟ ପାଇ । ଅଜ୍ଞାନ ଭାବ କ୍ଷୟ ଯାଇ ।୭୩।

ଶରଦ ଗୁଣ ମର୍ମ ଭେଦ । ନିଶ୍ଚଳ ହୋଇଲା ଜଳଧି ।୭୪।
ବେଦ ବେଦାନ୍ତେ ପାଇ ତତ୍ତ୍ୱ । ଯେସନେ ଜ୍ଞାନୀଙ୍କର ମତ ।୭୫।
କୃଷକେ ମିଳ ଧାନ୍ୟ କ୍ଷେତ୍ରେ । ଜଳ ବାନ୍ଧିଲେ ଦୃଢ଼ ଚିତ୍ତେ ।୭୬।
ଯୋଗୀଏ ପବନର ବଳେ । ଯେହ୍ନେ ସାଧନ୍ତି ଇଷ୍ଟକାଳେ ।୭୭।
ଶରଦ ରବିତେଜ ଲାଗି । ଜନ୍ତୁ ହୁଅନ୍ତି ଦୁଃଖଭାଗୀ ।୭୮।
ରଜନୀନାଥ ତାହା ହରି । ଯେହ୍ନେ ଗୋବିନ୍ଦ ବ୍ରଜନାରୀ ।୭୯।
ନିର୍ମଳ ଦିଶେ ଶୂନ୍ୟପଥ । ଗ୍ରହ ନକ୍ଷତ୍ର ନିଶାନାଥ ।୮୦।
ଶବଦ ବ୍ରହ୍ମବାଣୀ ଯେହ୍ନେ । ସାଧୁ ପୁରୁଷଙ୍କର ମନେ ।୮୧।
ନକ୍ଷତ୍ରଗଣ ମଧ୍ୟେ ଶଶୀ । ଅଖଣ୍ଡ ମଣ୍ଡଳ ପ୍ରକାଶି ।୮୨।
ଯାଦବ ଭୋଜବଂଶ ମଧ୍ୟେ । ଗୋବିନ୍ଦ ଯେସନେ ଆନନ୍ଦେ ।୮୩।
ଚନ୍ଦ୍ର କୁମୁଦ ଜଳରାଶି । ପବନ ପ୍ରକାଶଇ ନିଶି ।୮୪।
ଗାଈ ହରିଣୀ ପକ୍ଷୀ ନାରୀ । ଶରତ ଋତୁ ମଧ୍ୟେ ଗୃହୀ ।୮୫।
ଇଚ୍ଛା କରନ୍ତି ସ୍ୱାମୀ ସଙ୍ଗ । ମାୟାର ଭିଆଣ ଶ୍ରୀରଙ୍ଗ. ।୮୬।
କୁମୁଦ ପଦ୍ମ ଜଳ ଫୁଲେ । ଆନନ୍ଦ ଆଦିତ୍ୟର ତୁଲେ ।୮୭।
ପୁର ପାଟଣା ଗ୍ରାମ ଭୂଇଁ । ଇନ୍ଦ୍ର ଉତ୍ସବ ବିରାଜଇ ।୮୮।
କୃଷ୍ଣର ମାୟା ଶସ୍ୟରାଶି । ଦେଖିଣ ମାନବେ ପ୍ରଶଂସି ।୮୯।
ଋଷ ନୃପତି ବଣିଜାରେ । ପ୍ରବାସ କଲେ ଯେ ଯାହାରେ ।୯୦।
ବରଷେ ଉପବାସ କରି । ଯେହ୍ନେ ଭୁଞ୍ଜନ୍ତି ବ୍ରହ୍ମଚାରୀ ।୯୧।
ସୁଜନେ ଭାବ ହୋ ନିରତ । କହଇ ଦାସ ଜଗନ୍ନାଥ ।୯୨।

---

# ଗୋପୀଭାଷା

( ସ୍ୱର୍ଗତ ଦନେଇ ଦାସ )

କୃଷ୍ଣ କଥା ପାଡ଼ି ଗୋପୀ ସକଳ,
ଗୁଣ ସୁମରେ ହୁଅନ୍ତି ବିକଳ । ୧ ।

କାହୁଁ ଦାରୁଣ ଅକ୍ରୂର ଅଇଲା,
କଂସ ଆଜ୍ଞା ବୋଲି ଗୋପେ କହିଲା । ୨ ।

କୃଷ୍ଣ ଆସିବେ ବୋଲି ଗଲେ ଭଣ୍ଡି,
ତାହା ଜାଣିଲେ କମ୍ପା ଦିଅନ୍ତୁ ଛାଡ଼ି । ୩ ।

ରଥ ବେଢ଼ିଣ ସକଳ ତରୁଣୀ,
ମାଉ ମରନ୍ତୁ ଅକ୍ରୂରକୁ ପୁଣି । ୪ ।

କଂସ ଯାହା କରୁ ପଛେ କରନ୍ତା,
ଗୋପପୁରଯାକ ପଛେ ମାରନ୍ତା । ୫ ।

ତହିଁ ମଲେ ସେ ହୁଅନ୍ତା କାରଣ,
ଯାହା ଉପେକ୍ଷି ଗଲେ ନାରାୟଣ । ୬ ।

ଯେବେ ଶ୍ରୀକୃଷ୍ଣ ଗୋପରେ ଥାଆନ୍ତେ,
ଲକ୍ଷେ କଂସ ଆସି କିସ କରନ୍ତେ ? ୭ ।

କେତେ ଅସୁର ଗୋପକୁ ଅଇଲେ,
ମନ୍ଦ ବିଗ୍ରହେ ସର୍ବେ ନାଶ ଗଲେ । ୮ ।

ଯେବେ ସେହି ରୂପେ କଂସ ମରନ୍ତା,
କୃଷ୍ଣ ଆମ୍ଭ ସଙ୍ଗ କମ୍ପା ଛାଡ଼ନ୍ତା ? ୯ ।

ସେ୍କ ଗୋପୀଏ ବୋଇଲେ ଥାଇଣ,
ଆମ୍ଭେ ବେଲହୁଁ ହୁଡ଼ିଗଲୁ ପୁଣ । ୧୦ ।

ଗୋଲ କର ନ ଗ୍ରୁଡ଼ିଲେ ମାଧୋଇ,
କିସ କରନ୍ତା କଂସ ଘ୍ଚର ହୋଇ ? ।୧୧।

ଯେବେ ଅକ୍ରୂର ବାହୁଡ଼ ଯାଆନ୍ତା,
କୃଷ୍ଣ ଗୋପପୁରେ ରହିଆଆନ୍ତା ।୧୨।

ଯାଇ କହନ୍ତା ଅକ୍ରୂର ରଜାକୁ,
କଂସ ଡରେ କି ଆସନ୍ତା ଗୋପକୁ ? ।୧୩।

ସେ କି ଶୁଣିଣ ନାହିଁ କୃଷ୍ଣ କଥା,
ସେ କି ଇନ୍ଦ୍ରହୁଁ ବଡ଼ ସାମରଥା । ୧୪ ।

ଇନ୍ଦ୍ର ସପତ ଦିନ ବୃଷ୍ଟି କଲା,
ବଜ୍ରଘାତେ ପଥର ବରଷିଲା । ୧୫ ।

ଛତ୍ର ଆକାରେ ଗିରିବର ଧରି,
ଗୋପ ସମ୍ପଦ ରଖିଲେ ମୁରାରି । ୧୬ ।

ଇନ୍ଦ୍ର ହାରିଣ ଶରଣ ପଶିଲା,
ଗୋପେ ଗୋବିନ୍ଦ ନାମ ଦେଇଗଲା । ୧୭ ।

ସେ କି ଶୁଣିଣ ନାହିଁ କର୍ଣ୍ଣେ ଯେନ,
ଗୋପେ ଯେତେକ କଲେ ଘାଇ ବେନ । ୧୮ ।

କେତେ କେତେ ବିପତ୍ତି ନ ପଡ଼ିଲା,
କୃଷ୍ଣ ଥିଲାକୁ କିଛି ନ ଲାଗିଲା । ୧୯ ।

ସେ୍ବେ କେ ଅବା ଆମ୍ଭଙ୍କୁ ରଖିବ,
ଆମ୍ଭ ବିରହ ଦୁଃଖ ଉପେକ୍ଷିବ । ୨୦ ।

ପୂତନା ବୋଲଣ ଗୋପୀ ସବ ଦୁଃଖୀ,
ପୂକ ଗୋପୀ ବୋଇଲ ଶୁଣ ସଖି । ୨୧ ।

ସେ ଗୋ ଦାରୁଣ ଅଟଇ କହ୍ନାଇ,
ଘେଙ୍କେ ନିର୍ଦ୍ଦୟା ବୋଲି ଜାଣୁ ନାହିଁ । ୨୨ ।

ଯେବେ ଜାଣିଥାନ୍ତୁ ବେଳେ କଠୋର,
ଆମ୍ଭ ହୃଦେ କି ଲଦନ୍ତେ ପଥର ? । ୨୩ ।

ନିଶି ଦିବସେ ଯେଣୁ ବୁଲୁଥିଲା,
ପୂବେ ନିଗଣ କରି ଛାଡ଼ିଗଲା । ୨୪ ।

ଯାହା ଘରେ ଯେଉଁ ଦ୍ରବ୍ୟ ଅପୂର୍ବ,
ତାଙ୍କୁ ଲୁଚାଇ ଥୋଇ ଥାଉ ସର୍ବ । ୨୫ ।

ଆମ୍ଭେ ପତି ତନୟ ଗୋ ନ ଜାଣୁ,
ଗୁରୁ ଗଉରବ ଲାଜ ନ ମଣୁ । ୨୬ ।

ଆମ୍ଭ ପତି ତନୟ ସବୁ ସେହି,
ତାଙ୍କୁ ନ ଦେଖି ଯାଉଅଛୁ ଦେହି । ୨୭ ।

ତାର ମତ୍ତ ସାରଙ୍ଗ ଗୃଲି ଗତି,
ଦେଖି ଦେହ ଧରେ କେଉଁ ଯୁବତୀ ? । ୨୮ ।

ସେ ଗୋ ବନରୁ ଆସୁଥାଇ ଗୃଲି,
ଶିରେ ବରହୀ-ପୁଚ୍ଛ ଶୋଭେ ଝାଲି । ୨୯ ।

ନାସେ ବର୍ତ୍ତୁଳ ମୁକୁତା ଲୁଲଇ,
କର୍ଣ୍ଣେ କୁଣ୍ଡଳ ବେନି ବିରାଜଇ । ୩୦ ।

ଚନ୍ଦ୍ର-ଫାଶିଆ ଶୋଭେ କର୍ଣ୍ଣ ମଝି,
ଯେହ୍ନେ ରାହିରେ ଚନ୍ଦ୍ରମା ବିରାଜି । ୩୧ ।

ଗୋରଚନା ଚିତା ଶୋହେ କପାଳେ,
ତହିଁ ଉପରେ ରୁଞ୍ଜ ଗୁଞ୍ଜମାଳେ । ୩୨ ।
ଉରେ ଶାର୍ଦ୍ଦୂଳ ନଖ କଣ୍ଠିମାଳୀ,
ଅଙ୍ଗେ ପଡ଼ଣ ଥାଇ ଗୋରୁ ଧୂଳି । ୩୩ ।
ହସ୍ତେ ମୁରଳୀ ଗୋଟି ଥାଇ ଧେନ,
ଇଚ୍ଛା ହୋଇଲେ କରୁଥାଇ ଧ୍ୱନ । ୩୪ ।
କରେ ବଳୟ ବାହୁଟି କଙ୍କଣ,
କଟିତଟେ ଶୋହେ ପୀତବସନ । ୩୫ ।
କଟିସୂତ୍ର ମେଖଳା ଓଡଆଣୀ,
ଘୁରୁ ଚରଣେ ନେପୁର ବାଜେଣି । ୩୬ ।
ରତ୍ନ କଟାଉ ଶୋହେ ପଦ୍ମପାଦେ,
ଦାସ ବନାଇ ସେବା ସେହିଠାଏ । ୩୭ ।

---

# ଦ୍ରୌପଦୀ ବସ୍ତ୍ରହରଣ

( ସ୍ୱର୍ଗତ ଖମା ଧୀବର )

( ରାଗ—ପାହାଡ଼ିଆ କେଦାର )

ସଭାରେ ଦୁର୍ଯ୍ୟୋଧନ ରାଜନ ଡାକିଲା ଆରେ ରେ ଦୁଃଶାସନ
କର ଗମନ ଫେଡ଼ ଦ୍ରୌପଦୀ ଅଙ୍ଗୁ ବସନରେ ।

× × × ×

କେମନ୍ତ କରି ଆଜ ରଖିବେ ଶ୍ରୀ ଭଗବାନ ରେ ।
ଏମନ୍ତ ଆଜ୍ଞା ଯହୁଁ ଦେଲା ରାଜନ ହେ ।
ଶୁଣି ଉଠିଲା ଦୁଃଶା ପାମର ଘେନ ଯେ ।

ଜଣରେ ଉଚ୍ଛୁଡ଼ ଅଙ୍ଗୁ ବସନ କାଢ଼ଇ ଧୃତରାଷ୍ଟ୍ର ନନ୍ଦନ
ଖଣ୍ଡେ କାଢ଼ନ୍ତେ ଖଣ୍ଡେକ ପୁଣି ଦେଖେ ନୟନ ଯେ । ୧ ।

ତକ୍ଷଣ ଦୁଃଶାସନ ଚକିତ କହଇ ଦୁର୍ଯ୍ୟୋଧନ ଅଗ୍ରତ
ଭ୍ରେ ଦେବ ଶୁଣିମା ହେଉ ଘନୁମଣ୍ଡର କାନ୍ତ ହେ ।
ଦ୍ରୌପଦୀ ଅଙ୍ଗରୁ ବସ୍ତ୍ର ଏକ କାଢ଼ନ୍ତେ ପୁଣି ଉଦ୍‌ଭବ ଏକ
ଏ ଆଚମ୍ବିତ କଥା ତଦନ୍ତ ବୁଝ କେମନ୍ତ ହେ ।
ଶକୁନି ମୁଖ ଚାହିଁ ଗାନ୍ଧାରୀସୁତ ଯେ·
ବୋଲଇ ମାମୁଁ କହ ଏଥି ତଦନ୍ତ ଯେ ।

ଶକୁନି କହେ ନୃପତି ନାଥ ପଞ୍ଚପାଣ୍ଡବ ତାର ଗେରସ୍ତ
ମାଙ୍କ ପାଇଁ ପାଞ୍ଚ ପ୍ରକାର ପିନ୍ଧଇ ନେତ ହେ । ୨ ।

ଏମନ୍ତ କୂଟ କପଟ ବାଣୀ ପାଞ୍ଚି କହିଲା ଯହୁଁ ଶକୁନି
ଶୁଣି ହରଷ ହୋଇଲା କୁରୁକୁଳରାଜନ ଯେ ।

ଏହା ବଚନ ଶୁଣି ରାଜନ ଦୁଃଶାକୁ ଚାହିଁ ବୋଲେ ବଚନ
ଉଠ ବହନ ତ୍ୱରିତ ଯାଇଁ ଫେଡ଼ ବସନ ରେ ।

ଶୁଣି ତାହା ଦୁଃଶା ଉଠିଲା ତୁରିତ ଯେ ।
ପୁଣି କାଢ଼ିଲା ଅଙ୍ଗୁ ବସ୍ତ୍ର ବହୁତ ଯେ ।
ପ୍ରଥମ ଖଣ୍ଡ ପକାନ୍ତେ କାଢ଼ି ଦ୍ୱିତୀୟ ଖଣ୍ଡ ଅଛଇ ଜଡ଼ି
ଏମନ୍ତେ କାଢ଼ି ପକାଇ ଷସୀ ଭାବଇ ଚିତ୍ତ ଯେ । ୩ ।
ନଟକାରଙ୍କ ପରାଏ ହୋଇ ତେସନ ସତୀ ମଣ୍ଡି ଭ୍ରମଇ
କୁଲାଳ ଚକ୍ରେ ମୃତ୍ତିକା ଦେଇ ଯେସନ୍ତେ ଭ୍ରମାଇ ଯେ ।
ପଡ଼ନ୍ତି ପାଟ ପଟମ୍ବ ନେତ ରଙ୍ଗ ଶୁକଳ ଅନେକ ବସ୍ତ୍ର
କୋଟିକ କୋଟି ବସନ ଦୁଃଶା କାଢ଼ି ପକାଇ ଯେ ।
ବସ୍ତ୍ର ଫେଡ଼ିଲା ବୀର ଦ୍ୱାଦଶ ଦଣ୍ଡ ଯେ ।
ଛାଟକା ହୋଇ ଆଉ ନ ପାରେ କାଢ଼ି ଯେ ।
ଅନାଇଥିଲା କୁରୁରାଜନ ଦେଖିବ ବୋଲି ସତୀ ବଦନ
ଯହିଁକି ଗୃହେଁ ତହିଁ ବସନ ଅଛଇ ଜଡ଼ି ଯେ । ୪ ।

ସଭାରେ ଥିଲେ ଗଙ୍ଗା-ନନ୍ଦନ ବୋଇଲେ ଶୁଣ କୁରୁରାଜନ
କେତେନେଁ ସ୍ଥାନମାନ କରୁଛ ନାରୀରତନ ଯେ ।
ଯାହାକୁ ସାହା ଭଗବାନ ତୁ କି ତାହାକୁ ଅଟୁ ଭାଜନ
ଅନଳ ନେନେ ଛୁଇଁଲେ ହେବୁ ଦହନ ଯେ ।
ଆମ୍ଭ ବଚନ କର କୁରୁରାଜନ ଯେ ।
ନ କାଢ଼ ଆଉ ସତୀ-ଅଙ୍ଗ ବସନ ଯେ ।
ଭାନୁମତୀ ଯେ ତୋହର ପାଟ- ରାଣୀ ସେ କେତେ ପିନ୍ଧନ୍ତି ପାଟ
ଏ ଅଟେ ଗୋବିନ୍ଦଙ୍କ କପଟ ବୁଝ ରାଜନ ହେ । ୫ ।

ଭୀଷ୍ମ ବଚନ ଶୁଣି ରାଜନ ଡାକିଲା ଆରେ ରେ ଦୁଃଶାସନ
ନ କାଢ଼ କୃଷ୍ଣା-ଅଙ୍ଗୁ ବସନ ଘେନ ବଚନ ଯେ ।
ଦ୍ରୌପଦୀ ଦେବୀ କୁପିତ ମନ ବୁଲାଇ ଯଦି ଅଗ୍ନି-ନୟନ
ଚାହିଁବେ ସବୁ ହେବେ ଦହନ ଆସ୍ଥାନ-ଜନ ଯେ ।

ଈକ୍ଷଣ କର ଦେଖ ସଭା ବଦନ ଯେ ।
ଭାବନ୍ତ ବସିଛନ୍ତ ମୋ ଗୁରୁଜନ ଯେ ।
ପୁଣି ଚିନ୍ତନ୍ତ ସର୍ବେ ପୁରୁଷ          ଏହାଙ୍କୁ ଯେବେ କରିବି ନାଶ
ଏଥିରେ ନ ଲଭିବି ମୁଁ ଯଶ ବୁଦ୍ଧି ଏସନ ଯେ । ୬ ।

ଏରୂପେ ମନେ ମନେ ବିଗ୍ରହ          ପ୍ରଳୟ ଅଗ୍ନି ନେଇ ବିସ୍ତାର
ଗୃହାନ୍ତେ ଦୁର୍ଯ୍ୟୋଧନ ନଗରେ ପଡ଼ିଲା ଯାଇ ଯେ ।
ପବନଘାତ ପାଇ ହୁତାଶ          ପୋଡ଼ିଲା ନଗ୍ର ପୁର ଆବାସ
ଦେଖ ବଚନେ ସେ ରାଣୀହଂସପୁର ଦହଇ ଯେ ।
ସମସ୍ତ ନାରୀମାନେ ସଭୟ ହୋଇ ଯେ ।
ବ୍ୟସ୍ତେ ବସନ ତେଜ ଗଲେ ପଳାଇ ଯେ ।
ହନୁମନ୍ତର ଅଙ୍ଗରେ ଅଗ୍ନି          ବେଢ଼ନ୍ତେ ବସ୍ତ୍ର ପକାଇ ଫେଡ଼ି
ପ୍ରାଣ ଭୟରେ ସଭା ମଧ୍ୟରେ ମିଳିଲେ ଯାଇ ହେ । ୭ ।

ସଭାରେ ଥିଲେ ବନ୍ଧୁ ରାଜନ          ହସିଲେ ମୁଖେ ଦେଇ ବସନ
ଦ୍ରୋଣ ବୋଲନ୍ତ କୁରୁରାଜନ ବଚନ ଶୁଣ ହେ ।
ପରକୁ ଯେହୁ ଚିନ୍ତଇ ମନ୍ଦ          ତାହାର ମନ୍ଦ ଚିନ୍ତେ ଗୋବିନ୍ଦ
ଅନ୍ତକାଳରେ ସେହି ଲଭଇ ଅତି କଷଣ ହେ ।
ତୁ ନୃପନାଥ ମନେ କଲୁ ଗରବ ହେ ।
ଗର୍ବଗଞ୍ଜନ-ବାନା ପ୍ରଭୁ କେଶବ ହେ ।
ସଭାର ତଳେ ଦ୍ରୌପଦୀ ଆଣି          ବିବସ୍ତ୍ର କଲୁ ନୃପଞ୍ଚମଣି
ତୋହର କୁଳବଧୂ ଉଲଙ୍ଗ ଦେଖିଲେ ସର୍ବ ହେ । ୮ ।

ଏମନ୍ତ ଦ୍ରୋଣ ଗୁରୁଙ୍କ ବାଣୀ          ଶୁଣିଣ ସେହି ନୃପଞ୍ଚମଣି
ଜୋକ ମୁଖରେ ଲବଣ ଜାଣି ହେଲା ମଉନ ଯେ ।
ଡଗରମାନେ ବହନ ଯାଇ          ଧୃତରାଷ୍ଟ୍ରର ଅଗ୍ରେ ଜଣାଇ
ହେ ଦେବ ତୁମ୍ଭ ଜ୍ୟେଷ୍ଠ ତନୟ ମହିମା ଶୁଣ ହେ ।

ଯୁଧିଷ୍ଠିର ଦେବ ସଙ୍ଗେ ପଶାରେ ମାତି ହେ ।
ରାଜ୍ୟଧନ ଭଣ୍ଡାର ସମସ୍ତ ଜିତି ହେ ।
ସଭାର ତଳେ ଦ୍ରୌପଦୀ ଆଣି ବିବସ୍ତ୍ର କଲା ନୃପଡମଣି
ଅନଳ ନେବେ ଗୃହାଁନ୍ତେ ସଞ୍ଚି ପୁର ଦହନ୍ତି ଯେ । ୯ ।
ଶୁଣି ବୋଇଲେ ଅନ୍ଧ ରାଜନ ମୋହର ବଂଶ ହେଲେ ନିଧନ
କୁଳବଧୂଙ୍କୁ ସଙ୍ଗରେ ଘେନଯାଏ ନରେଶ ଯେ ।
ହସ୍ତରେ ଘେନ ସୁବର୍ଣ୍ଣ ଥାଳ ସୁବେଶ ହୋଇ ଚଳିଲେ ବାଳୀ
ଜୟ ଶବଦ ଦେଇଣ ହେଲେ ଦ୍ରୌପଦୀ ପାଶ ହେ ।
ବନ୍ଦାପନା କରିଲେ ମାନ୍ୟ ବିଶେଷ ହେ ।
ବୋଇଲେ ଦେବି ! ଆଉ ନ କର ରୋଷ ହେ ।
ସାନ୍ତ୍ୱନା କରି ପୁରକୁ ନେଲେ ରତ୍ନ ପଲ୍ୟଙ୍କେ ଆସନ ଦେଲେ
ବିବିଧ ଉପହାରେ ତାହାଙ୍କୁ କଲେ ସନ୍ତୋଷ ଯେ । ୧୦ ।
ସେଠାରୁ ଦେବୀ ଗୌରବ ପାଇ ରତନ ପଲ୍ୟଙ୍କରୁ ଓହ୍ଲାଇ
ଆନନ୍ଦ ମନେ ନିଜ ସଦନେ ବିଜୟ କଲେ ଯେ ।
ଆଗ ପଛରେ ଚଳନ୍ତି ଦାସୀ ପ୍ରବେଶ ହେଲେ ବାରୁଣା ଆସି
ଭିତର ପୁର ରତ୍ନ ପଲ୍ୟଙ୍କେ ଯାଇ ବସିଲେ ଯେ
ଏ ଯେ କପଟପାଶା, ଅମୃତରସ ଯେ ।
ସୁଜନ ଜନେ ଏହି ରସରେ ରସ ହେ ।
ନୁହେଁ ମହତ ଜାତି କୈବର୍ତ୍ତ ଶୁଦ୍ଧ ଅଶୁଦ୍ଧ ନ ଘେନ ଚିତ୍ତ
କହଇ ଖିମା ପ୍ରଭୁ ଚରଣେ ସର୍ବଦା ଆଶ ହେ । ୦

# ମନବୋଧ ଚଉତିଶା

( ସ୍ୱର୍ଗତ ଭକ୍ତଚରଣ ଦାସ )

କହଇ ମନ ଆରେ ମୋ ବୋଲ କର ।
କଳା-ଶ୍ରୀମୁଖ ବାରେ ଦେଖିବା ସ୍ଥଳ ରେ
କେତେ ଧନକୁ ମନ ବାନ୍ଧିଛୁ ଆଣି
କ ଯେବେ ଯିବୁ ତୋର ଛୁଟିଲେ ଘଟ ରେ ।୧।
ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରାକାଠି ।
ଖାଉଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ
ଖଟ ପଲଙ୍କେ ମନ ଶୋଯାଇ ଶୋଉ ।
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହ ରେ ।୨।
ଗଲେଣି ତୋ ସଙ୍ଗରୁ ଯେତେକ ଜନ ।
ଗଣ୍ଠିରେ ବାନ୍ଧି ନେଲେ କେ କେତେ ଧନ ରେ ।
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ ।
ଗାଡ଼େ ମଜ୍ଜିଣ ନଷ୍ଟେ ଧନ ଅର୍ଜିଲୁ ରେ ।୩।
ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ ।
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ।
ଘର ଘରଣୀ ଦେହ କଳାଉଥିବେ ।
ଯେବେ ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ରେ ।୪।
ଉଦ୍ଧାର ହେବୁ ଯେବେ ଭବସାଗରୁ ।
ଉପାୟ କର ଭଜ ଏବେ ଶ୍ରୀଗୁରୁ ରେ ।
ଊଣା ହେଉଛି ଦିନୁ ଦିନ ଆୟୁଷ ।
ଆଉ ଏଣିକ ଅଛି କେତେ ବୟସ ରେ ।୫।

ଚନ୍ଦ୍ର ପ୍ରତିମା ପ୍ରାୟେ ଦିଶୁ ସୁନ୍ଦର ।
ଚର୍ମ ଭିତରେ ଦେଖ କି ନାରଖାର ରେ ।
ଚର୍ମ୍ମ ବେଢ଼ିଛି ସିନା ଚଉଗଣିକ ।
ଚଉ ଭୁ ଦିଅ ମାଲଗିରିବାସୀଙ୍କି ରେ । ୬ ।
ଛାର ଦେହକୁ ମନ କରିଛୁ ସଜ ।
ଛନ୍ଦ କପଟ ତେଜ ଗୋବିନ୍ଦ ଭଜ ରେ ।
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା ।
ଛଖଣ୍ଡି କାଠ ହେବ ତୋ ପାଇଁ ଲୋଡ଼ା ରେ । ୭ ।
ଯମ ଯେ ନ ଜାଣଇ ବାଳ୍ୟତ ଯୁବା ।
ଜୀଇଁବୁ ବୋଲି ମନେ କରିଛୁ ଅବାରେ ।
ଜଣେହେଁ ଏଥେ କେହି ନାହିଁ ଅମର ।
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାର ରେ । ୮ ।
ଝୋଲା ଗଣ୍ଠା ପାଗ୍ଗୋଡ଼ା ପିନ୍ଧାକୁ ରସୁ ।
ଝାଡ଼ ସଂସାରେ ମନ ନ ବୁଝି ପଶୁ ରେ ।
ଝୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ ।
ଝଡ଼ିଲା ପତ୍ର ବୃକ୍ଷେ ଲାଗିଛି କାହିଁ ରେ । ୯ ।
ନଶି ଦିବସେ ଥିଲୁ ନୋହୁ ନା ମନ ।
ନିଦ୍ରାରେ ଦେଖୁଅଛୁ ଯଥା ସ୍ୱପନ ରେ ।
ନ ଯିବେ ସଙ୍ଗେ କେହି ଯିବୁ ତୁ ଏକା ।
ନାମ ମାତ୍ର ଅଟଇ ପଥକୁ ସଖା ରେ । ୧୦ ।
ଟାଣ କରିଛୁ ମନ ସବୁ ମୋହର ।
ଟଳି ପଡ଼ିଲେ କେହି ନୋହେ କାହାର ରେ ।
ଟେଗ ଭିତରେ ଯେହ୍ନେ ଅପୂର୍ବ ନାଗ ।
ଟୋପ ଚଉଁରି ଅଛି ତୋ ଦେହେ ପୂର ରେ । ୧୧ ।

ଠିକେ ମୁଁ କହୁଅଛୁ କର ମୋ କଥା ।
ଠିକେ ତୋ ଦେହେ ଅଛୁ ଶୂନ୍ୟ ଦେବତା ରେ ।
ଠକ ଯିବୁଟି ଠିକ ମୁଣ୍ଡ ପଡ଼ିଲେ ।
ଠକେଣ ଗୁରୁସେବା କର ତୁ ଭଲେ ରେ ।୧୨।
ଡାକ କହୁଛୁ ମନ ଡାକ ଗୋବିନ୍ଦ ।
ଡର ଜଞ୍ଜାଳ ଯାଉ ତୋହର ହୃଦ ରେ ।
ଡେରଥାନ୍ତି ଶ୍ରବଣ ଭକ୍ତ ଡାକକୁ ।
ଡଙ୍ଗା ଯେହ୍ନେ ଜଳରେ ଶୁଦ୍ଧା ପଛକୁ ରେ ।୧୩।
ଢୋଲ ଯେସନେ ଢାଉଁ ଢାଉଁ ବାଜଇ ।
ଢାଳେ ଚର୍ମ ଭିତରେ କଟୁଥାଏ ନାହିଁ ରେ ।
ଢାଙ୍କି ରହିଛୁ ଦେହ ସବୁଟି ତୁଚ୍ଛ ।
ଢଳ ପଡ଼ିଲେ ସବୁ ହେବଟି ମିଛ ରେ ।୧୪।
ଏଣେ ତୁ ଦେଇଥିଲେ ତେଣେ ପାଇବୁ ।
ଅଣଆୟୁତ୍ତ ବେଳେ କ ଯେନ ଯିବୁ ରେ ।
ଅଣନିଶ୍ଵାସୀ ହୋଇ ରହିବୁ ଦିନେ ।
ଅନେକ ଦୁଃଖ ଦେବେ ଯମ ଭୁବନେ ରେ ।୧୫।
ତୁ ଯେ ବୋଲୁ ମୋହର ଅର୍ଜିଲା ଧନ ।
ତୋ ଦେହ ନୋହେ ତୋର ଦେଖ ଏମାନ ରେ ।
ତୋହର ସଙ୍ଗେ ମନ ଗଲେଣି କେତେ ।
ତୁ ମିଥ୍ୟା କଥାକୁ ତ ଯାଉ ପରତେ ରେ ।୧୬।
ଥିଲେ ଏ ସଂସାରରେ ଯେତେ ନୃପତି ।
ଅପ୍ଳ କରି କେ ଭୋଗ କଲା ଏ ପୃଥ୍ଵୀ ରେ ।
ଥୋଇଲା ଧନ ଚୋର ଖଣ୍ଡି ଖାଇବେ ।
ଥାନେ ତୋହର ଘର କରି ରହିବେ ରେ ।୧୭।

ଦେହେ ପୂରିଛି ତୋ'ର ଅଶେଷ ରୋଗ ।
ଦିନା ଗୃରଂକେ ସିନା ଏ ସୁଖଭୋଗ ରେ ।
ଦଣ୍ଡେ ହେଁ କେହି ତୋତେ ରଖିବ ନାହିଁ ।
ଦଣ୍ଡୁ ଯେ ଥିବ ଯମ ଡଗର ନେଇ ରେ ।୧୮।

ଧର୍ମ ଅଧର୍ମ କଥା ନ ଜାଣୁ ତୁହି ।
ଧନ୍ଦ ହେଉଛୁ ଧନ ଅର୍ଜିବା ପାଇଁ ରେ ।
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ ।
ଧର୍ମରେ ଆତଯାତ ହେଉଛି ମନ୍ଦ ରେ ।୧୯।

ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ ।
ନରକେ ପଡ଼ି କେତେ ଦୁଃଖ ସହିବୁ ରେ ।
ନିମିଷେ ମାତ୍ର ମୁଖେ ନ ବୋଲୁ ହରି ।
ନାଶ ହେବୁକୁ କମ୍ପା ଅଛୁ ଆବୋରି ରେ ।୨୦।

ପାହିଲେ ନିଶି ଯେହ୍ନେ ରବି ଉଦୟ ।
ପଦ୍ମଲୋଚନ ସବୁ ଦେହେ ଉଦୟ ରେ ।
ପ୍ରଭୁଙ୍କୁ ଆଶ୍ରେ କର ତରିବୁ ଯେବେ ।
ପାଦପଦ୍ମରେ ଚିତ୍ତ ଦିଅ ତୁ ଏବେ ରେ ।୨୧।

ଫୁଲ ଯେସନେ ଫୁଲେ ଫୁଲେ ବିହରେ ।
ଫୁଲ ସମୀରେ ଆଉ ନ ଦିଶେ ତାରେ ରେ ।
ଫଳ ସଂସାରେ ଲଭ ହରିଭଜନ ।
ଫାଶ ଗଳାକୁ କମ୍ପା କରିଛୁ ଧନ ରେ ।୨୨।

ବେଳକୁ ବେଳ ତୋତେ କହୁଛି ମୁହିଁ ।
ବାନ୍ଧିଣ ନେବେ ଯମ କ ଦୁଃଖ ଦେଇ ରେ ।
ବିକଳେ କାନ୍ଦୁଥିବୁ ଆକୁଳ ହୋଇ ।
ବେଳହୁଁ ଆଶ୍ରେ କର ଭଜ ଗୋସାଇଁ ରେ ।୨୩।

ଢେଲା ବୁଡ଼ିବ ହେଲା କଲେ କହୁଛୁ ।
ଭଙ୍ଗା ନାବରେ କେ ବା ସିନ୍ଧୁ ତରିଛୁ ରେ ।
ଘାବକୁ ନିକଟ ସେ ଅଗ୍ରବେ ଦୂର ।
ଭକତ ଦାସ କହେ ଜୀବନ ସ୍ଥିର ରେ । ୨୪ ।
ମିଥ୍ୟା ମାୟା ସଂସାର ନୋହେ କାହାର ।
ମଲ ବୋଲଣ ଦିନେ ପଡ଼ିବ ହ୍ଵର ରେ ।
ମଝି ଭିତରେ କେହି ଦେଖିବ ନାହିଁ ।
ମଲା ବୋଲି କାନ୍ଦୁଛୁ ମରିବୁ ଭୁହି ରେ । ୨୫ ।
ଜନମ ହେଲେ ପ୍ରାଣୀ ଅବଶ୍ୟ ମରି ।
ଯଶ ରଖିବୁ ଯେବେ ଭଜ ଶ୍ରୀହରି ରେ ।
ଯମ ବାନ୍ଧି ନେବଟି ହେବୁ ମେଲାଣି ।
ଜଗନ୍ନାଥ ମହିମା ଏତିକ ଆଣି ରେ । ୨୬ ।
ରଙ୍ଗ ପସରା ସିନା ଭବ-ସାଗର ।
ରଙ୍ଗ ଭିତରେ ଅଛି କ ନାରଖାର ରେ ।
ରୂପ ପ୍ରତିମାକୁ ତୁ ପରତେ ନ ଯା ।
ରହିବେ ନାହିଁ କେହି ରାଜା ପରଜା ରେ । ୨୭ ।
ଲୋଚନେ ଦେଖି କର୍ଣ୍ଣେ ଶୁଣୁଛୁ ନିତ ।
ଲୋଭ କରି ଅର୍ଜିଛୁ ଧନ ସମ୍ପତ୍ତି ରେ ।
ଲୋଭଟି ସବୁ ନାଶ କରଇ ମନ ।
ଲୋଡ଼ିଲେ ନ ପାଇବୁ ଆଉ ଜୀବନ ରେ । ୨୮ ।
ବୃଥାର୍ଥେ ବହିଅଛୁ ଦୁର୍ଲ୍ଲଭ ଦେହ ।
ବିଷୟ-ବିଷେ ଆଉ ନ ବଳା ସ୍ନେହ ରେ ।
ବୁଡ଼ିଯିବଟି ମୂଳ ଲାଭ ସରିବ ।
ବେଳହୁଁ ଆଶ୍ରେ କରି ଭଜ ମାଧବ ରେ । ୨୯ ।

ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ମନ ।
ସତେ ନ ପାଇବୁ ଆଉ ଜୀବନ ରେ ।
ଶ୍ରୀକୃଷ୍ଣ ନାମ ଗୋଟି କର ଭଜନ
ଶ୍ରୀକୃଷ୍ଣ ପଦ୍ମପାଦେ କର ତୁ ଧ୍ୟାନ ରେ । ୩୦ ।
ସନ୍ତୋଷ ଚିତ୍ତେ ତୁହି ହରିଙ୍କି ଭଜ ।
ସଂସାରେ ପଡ଼ି ଆଉ ନ ପାଅ ଲାଜ ରେ ।
ସବୁଟି ମିଛ ହରି ନାମଟି ସତ ।
ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ଚିତ୍ତ ରେ । ୩୧ ।
ସତ୍ୟ ମଣିକୁ ତୁହି ଭବସାଗର ।
ସରି ଯାଉଛି ପରମାୟୁ ତୋହର ରେ ।
ସନ୍ତୋଷ ହୋଇ ଦୃଢ଼େ ଭଜ ଶ୍ରୀହରି ।
ଶୋକସାଗରୁ ଯେବେ ହୋଇବୁ ପାରି ରେ । ୩୨ ।
ହୁଡ଼ିଲେ ଯେତେ ଜନ ହରିନାମକୁ ।
ଯମଗଣଙ୍କ ଗଲେ ବୁଡ଼ି ତଳକୁ ରେ ।
ହଜିଲେ ଦେହ ଆଉ ପାଇବୁ ନାହିଁ ।
ହାଟ ବସାଇଥିବେ ତୋ ଦେହ ପାଇଁ ରେ । ୩୩ ।
କ୍ଷଣ ଦୁର୍ଲ୍ଲଭ ଦେହ ହୋଏ ଆୟୁଷ ।
କ୍ଷଣ ନ ଯିବ ନାମ ହୃଦରେ ଘୋଷ ରେ ।
ଛାର ଦେହକୁ ମନ ନ ଯା ବିଶ୍ୱାସ ।
ଛାର ଦୁର୍ବୁଦ୍ଧି କହେ ଭକତ ଦାସ ଯେ । ୩୪ ।

---

## କଂସର ଶଠାଉ

( ସ୍ୱର୍ଗତ ଭକ୍ତଚରଣ ଦାସଙ୍କ ମଥୁରାମଙ୍ଗଳରୁ )

( ରାଗ—ବଙ୍ଗଳାଶ୍ରୀ )

ଲେଖିଅଚ୍ଛି କଂସ          ହୋଇ ମହାରୋଷ
ଆରେ ଗୋପପତି ନନ୍ଦ,
ଆଜ୍ଞା ପ୍ରମାଣେ          ତତକାଳେ ଆସିବୁ
ନୋହିଲେ ଛେଦିବି କନ୍ଧ । ୧ ।

ଜାଣୁ ତ ମୋହର          ବଳ ବୀର୍ଯ୍ୟ ଯେତେ
ଅରିର କୁଳକୁ କେତୁ,
ପ୍ରତିଜ୍ଞାରେ ରଣ          ତେଜି ରଣରାଜ
ପୁରେହେଁ ଲଭନ୍ତି ମୃତ୍ୟୁ । ୨ ।

କୋପ କଲେ ମହୀ          ଦୋହଲି ଉଠଇ
ମେରୁ ହୋଏ ଥରହର,
ବାଣ ଦେଲେ ଜନ୍ତୁ—          ପଡି ଭସ୍ମ କରେ
ଆଉମାନେ କେତେ ଛାର ? । ୩ ।

ବଧାଘାତେ ଚନ୍ଦ—          କୂଟ କୁଧରକୁ
କରି ମୁଁ ପାରଇ ଚୂନା,
ଅରି-ନାଶନ—          ବାନା ମୁଁ ବହଇ
ଶରଣକୁ ବଜ୍ରସେହ୍ନା । ୪ ।

ଦାମ୍ଭ ପଣକୁ          ସୁନାସୀର ପରାଏ
ଗମ୍ଭୀରପଣେ ଜଳଧି,
ପଣ୍ଡିତପଣେ          ଦେବଗୁରୁ ହାରଇ
ବେଦ ବେଦାନ୍ତରେ ବୁଧି । ୫ ।

ଧାର୍ମିକପଣେ କେହ୍ନ ସମ ନୁହନ୍ତ
ପରଜା ପାଳନେ ତାତ,
ମୋର ଦେଶରେ ଭସ୍ମ କର ପ୍ରଚଣ୍ଡ
ହୋଇ ନ ବହଇ ବାତ । ୬ ।

ଅଗ୍ନି ଦେବତା ଶିଖାମାନ ନତ୍ରନ
ଦେଖି ମୋର ତେଜ ବଳ,
ସୁଜନ ରଖି ଦୁର୍ଜ୍ଜନକୁ ମାରଇ
ଏ କଥା ମୋହର ମୂଳ । ୭ ।

ଗଡ଼ ଦେଖି ବଡ଼ ଷଣ୍ଢୀମାନେ ଆଡ଼
ହୁଅନ୍ତ ବହୁତ ଦୂରୁଁ,
କଟକାଇ କଲେ ଅମରେ ପଳାଇ
ଯାଆନ୍ତ ଅମର ପୁରୁଁ । ୮ ।

ଯାଦବକୁଳ କୁମୁଦ ବନ ପ୍ରାଏ
ମୁଁ ତହ୍ନିଁକ ନିଶାମଣି,
ସୁନ୍ଦରପଣେ କାମ ସର ନୁହଇ
ସହିବାପଣେ ଧରଣୀ । ୯ ।

ଯୁଦ୍ଧ ନ କର ଯୋଦ୍ଧାମାନ ଜଣିଲ
ବ୍ରହ୍ମାଣ୍ଡ ହୋଇଲା ମୋର,
ଏହିଠାରେ ଥାଇ ଦର୍ଶନେ ନ ଆସୁ
ଏତେ ଗାରିମା ତୋହର । ୧୦ ।

ରଡ଼ ଟଗୋଟାକେ ସବୁଜନ୍ତୁ ମରିବେ
ତିନପୁରେ ଥିବେ ଯେତେ,
ଦୟା କର ତାଙ୍କୁ ଶରଣ ରଖିଲି
ଯେଣୁ ଆଶ୍ରେ କଲେ ମୋତେ । ୧୧ ।

ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ସଙ୍ଗେ ଅଷ୍ଟଭୁଜ
ସମସ୍ତେ ମୋହର ବଶ,
ମହା ଦୁଷ୍ଟମାନେ ଛାଡ଼ ପଳାଇଲେ
ଶୁଣି ମୋର ଖରଘୋଷ । ୧୨ ।

ଛାର ଗରୁଡ଼ ତୁ ଅଟୁ ଏଡ଼େ ମୂଢ଼
ନ ଦେଉ ମୋହର କର,
ଦେବ ଯେବେ ଧାପ ରଖିବ କେ ବାପ
ଅନଳେ ଦହିବ ପୁର । ୧୩ ।

ଶଶୁର ଯାହାର ଜରାସନ୍ଧ ବୀର
ସଖା ଯାର ବୀର କେଶୀ,
ଏକା ନମିଷକେ ଚରାଚର ମଣ୍ଡି
ପକାଇ ପାରଇ ଧ୍ୱଂସି । ୧୪ ।

ଶୂର ନାରକା ବ୍ୟୋମା, ଅଘା, କଦମ୍ବା,
ସଙ୍ଗାତ ଦୃଢ଼ବନ୍ଧ ବୀର,
ଚାଣୂର, ମୁଷ୍ଟିକ, ଶଲ୍ୟ ଆଦିମାନେ
ଅଛନ୍ତି ମୋ ହନ୍ତକାର । ୧୫ ।

କେବଳ ଶିଖଣ୍ଡ— କୁସୁମକୁ ମହା-
ପ୍ରଳୟ ବରଷା ଲୋଡ଼ା,
ସେହି ପ୍ରାପ୍ୟେ ମୁହିଁ ସେହି ପ୍ରାପ୍ୟେ ତୁହି
କ୍ଷିତିରେ ଯିବୁ ତୁ ପଡ଼ି । ୧୬ ।

ଏବେ ମୋର ଧନୁ- ଉଛବ ହେଉଛି
ସମ୍ଭାର ଦେଖାଇ ଆସ,
ସବୁ ଦୋଷ ତୋର କ୍ଷମା କଲି ମୁହିଁ
ମନେ ନ କରିବୁ ତ୍ରାସ । ୧୭ ।

ସମ୍ଭାର ବଧି ଶତେ ଘର ଢେଳାଇ
ଗୋଷ୍ଠିକା ଅଧାମ ଆବ୍ଦ,
ସଙ୍ଗେ ଗୋପ ଦଶ ପଞ୍ଚାଶ ଆଣିବୁ
କରିବେ ସେ ଯାତ୍ରାବଧି । ୧୮ ।

ରାମ କୃଷ୍ଣ ବେନ ଘରଙ୍କି ଅକ୍ରୂର
ସଙ୍ଗେ ସଙ୍ଗ କରି ଦେବୁ,
କେଡ଼େ ହେଲେଣି ତୋହର ବେନ ପୁଏ
ତାହାଙ୍କୁ ଆମ୍ଭେ ଦେଖିବୁ । ୧୯ ।

ଯେମନ୍ତି ଦେଖିବେ ମୋ ଧନୁ ଉତ୍ସବ
ଶୁଭ କଥା ସିନା ତୋତେ,
ବଡ଼ ଲୋକ ସଙ୍ଗେ ସଙ୍ଗ ହୋଇ ଯିବେ
ଭୟ ନ ରହିବ ଚିତ୍ତେ । ୨୦ ।

ବୃଦ୍ଧ ଶରୀର, କେତେ ଦିନ ବଞ୍ଚିବୁ,
ମିଥ୍ୟା ମାଟି କଳେବର,
ତୋହ ଥାଉଁ ଥାଉଁ କୁମର ବେନଙ୍କି
ଆମ୍ଭରେ ପରିଚେ କର । ୨୧ ।

ଶାଢ଼ୀ ବନ୍ଧାଇ ରାଜନ ପଣ ଦେଇ
ସୁଖେ ଗୃହେ ବସି ଥାଅ,
ଆମ୍ଭର ଯେତେ ହାନି ଲାଭ ହୋଇବ
କରିବେ ତୋହର ପୁଅ । ୨୨ ।

ନଶି ପାହିଲେ ଧନୁପୂଜା ହୋଇବ
ଅଳସ ନ କର ଆସ,
ଏମନ୍ତ ବୋଲି ଚିଠାଉ ଲେଖି ଅଛୁ
ପଢ଼ି ନନ୍ଦ ହେଲେ ତୋଷ । ୨୩ ।

ବସୁଦେବ ଚିତ୍ତରେ          ହୃଦଯେ ଉଡରେ
କଲା ମହାଘୋର ଘାତ,
ଯହୁଁ ଶୁଣିଲା          ମଥୁରା ଯିବେ ଦୂତ
ସଙ୍ଗେ ରାମ ଶିରୀପତ । ୨୪ ।
ପରିଜନ ରାଇ          ବୋଲେ ଗୋପପାଇଁ
ଗୋପରେ ଘୋଷଣା ହୁଅ,
ନିଶି ପାହିଲେ          ମଥୁରାପୁର ଯିବେ
ସମ୍ଭାର ସଜାଡ଼ ଥାଅ । ୨୫ ।
ଏତେକ ଭାଷି          ଅକ୍ରୂରଙ୍କୁ ଚରଣ
କରଇ ବ୍ରଜରାଜା,
ବୋଲେ ବଇରାଗୀ          ଭକତଚରଣ
ଗୋପରେ ବାଜଇ ବାଜା । ୨୬ ।

———

# ଯଶୋଦା ବିଳାପ

( ସ୍ୱର୍ଗତ ଭକ୍ତଚରଣ ଦାସଂ—ମଥୁରାମଙ୍ଗଳରୁ )

( ରାଗ—ବରାଡ଼ି, ବାଣୀ ଚକ୍ରଡ଼ାବସନ୍ତ ବୃତ୍ତ )

ଆରେ ବାବୁ ଶ୍ୟାମଘନ ! ତୁ ଗଲେ ମଧୁଭୁବନ
କାହା ମୁଖ ଅନାଇ ବଞ୍ଚିବି ।
ହେବ ଦଶ ଦିଗ ଶୂନ୍ୟ ଅସ୍ଥିର ହେବ ଜୀବନ
କେଶି ଦିବସରେ ଫେରୁଥିବୁ ରେ ଜୀବଧନ ।
ଜୀବନ ବିହୁନେ ଯେସନେ ଝସ,
ରାଜା ବିନେ ଯେସନେ ଗ୍ରାମ ଦେଶ ରେ । ୧ ।

କାହା ଅଙ୍ଗେ ଚତୁଃସମ ଲେପିବି କରି ସୁଷମ
ନିଦ୍ରାରେ କେ ହେଉଥିବ ଧାରି
କାହାକୁ ଅଞ୍ଜନ ଦେବି ବସ୍ତ୍ର ପାଡ଼ି ଶୁଆଇବି
ପିତାଙ୍କୁ ମାଗିବ କେହୁ ହରି ରେ ଜୀବଧନ ।
ଏ କଥା ସୁମରି ଫିଟି ମରି,
କଣ୍ଠେ ଯେବେ ଯିବୁ ମଧୁପୁରୀ ରେ । ୨ ।

ବାନ୍ଧିବି କାହାର କେଶ କୁସୁମେ କରି ସୁବେଶ,
କାହା ଲଲାଟରେ ଦେବି ଚିତା ।
କାହାର କର୍ଣ୍ଣେ କୁଣ୍ଡଳ ଖଞ୍ଜିବି ରେ ମୋର ବାଳ
କାହାପାଇଁ କରୁଥିବି ଚିନ୍ତା ରେ ଜୀବଧନ ।
କାହା ଅଙ୍ଗୁ ଧୂଳି ଦେବି ପୋଛି ।
କାହାକୁ ବା ପିନ୍ଧାଇବି କାଛି ରେ । ୩ ।

ଯେତେବେଳେ ବନେ ଯାଉ, ସଙ୍ଗରେ ମୋ ପ୍ରାଣ ନେଇ
ନିମିଷେ ବିଚ୍ଛେଦ ନ ସହଇ,
ଏବେ ଯିବୁ ମଥୁରାକୁ ମୋତେ ସମର୍ପି କାହାକୁ
ଚନ୍ଦ୍ରମୁଖ ନ ଦେଖିଲେ ମୂର୍ଚ୍ଛି ରେ ଜୀବଧନ ।
ଜୀବନ ହାରିବି ଗଣ୍ଡଜଳେ,
ତୁ ମୋତେ ଅନ୍ତର ହେଲେ ଛଳେ ରେ । ୪ ।

ସର ଲବଣୀ ଅଧାମ ପକ୍ୱରମ୍ଭା ସୁଧାସମ
ମୁଖେ ଦେଲେ ଅଥୁ କରି ଫିଙ୍ଗୁ,
ଯେତେ ରୂପେ ନାଳଆଇ ପରଷଇ ବଳଆଇ
କୋପେ ଉଠି ପାକଭାଣ୍ଡ ଭାଙ୍ଗୁ ରେ ଜୀବଧନ ।
ଏବେ ଦୂର ହୋଇବ ସେ କଥା,
କି ନ କରେ ଦାରୁଣ ବିଧାତା ରେ । ୫ ।

ଗୁଳିକ ଅନାଇ ଡରୁ ଧାଇଁ ମୋତେ କୋଳ କରୁ
ବସନେ ଘୋଡ଼ାଇ ମୁଖ ଗୋଟି
ଥିବୁ ଥରଥର ଦେଖିଲେ ଅନ୍ଧାର ଘର
ଉଚ୍ଚ ପାବଚ୍ଛ ନ ପାରୁ ଉଠି ରେ ଜୀବଧନ ।
ମଧୁପୁରେ ହସ୍ତୀ ଘୋଡ଼ାମାନ
ଗର୍ଜିଲେ ନ ପୁଣି ଡରୁ ଶ୍ୟାମ ରେ । ୬ ।

କାହ୍ନେ ଦେଖି ଶବପନ୍ତ ନାନା ଭୟଙ୍କର ମୂର୍ତ୍ତି
ହୃଦେ ଯାଉ ସେ ଘରୁ ପଳାଇ,
ଏବେ କଂସପୁର ଯିବୁ ରାକ୍ଷସମାନ ଦେଖିବୁ
ଡରି କାହାକୁ ଧରିବୁ ଯାଇ ରେ ଜୀବଧନ ।
ମା ଏ ବୋଲ ଡାକିବୁ କାହାକୁ,
ଯାହା ବା କେ ଆହା ବୋଲିବାକୁ ରେ ? । ୭ ।

ନିଶାକାଳେ ମୋର କୋଳେ ଶୋଇଥାଉ ଶ୍ରମବଳେ
ସ୍ୱପନରେ ଦେଖି କିସ କିସ,
ମା ବୋଲି ଚମକି ପଡ଼ି, କଣ୍ଠେ ଦୁଇ ଭୁଜ ଭିଡ଼ି,
ପୁଣି ଶୋଉ ଯୋଡ଼ି ହୋଇ ବାପ ରେ ଜୀବଧନ ।
ସେ କଥା ସୁମରି ମନେଯିବ,
ଉଠ ବୋଲି କାହାକୁ ଡାକିବି ରେ ? । ୮ ।

# ମଲ୍ଲଯୁଦ୍ଧ

(ସ୍ୱର୍ଗତ ଭକ୍ତଚରଣ ଦାସ—ମଥୁରାମଙ୍ଗଳର ଧ୍ୱାବଂଶ ଗ୍ରନ୍ଥରୁ)

( ରାଗ—ଆହାରୀ )

କୃଷ୍ଣ ଚାଣୁର ସମର ଗୁରୁତର          ଥର ଥର ଧରା ହୋଇଲା ।
କୃଷ୍ଣ ବଳବୀର୍ଯ୍ୟ ଜାଣି ନିଶାଚର          ଚିତ୍ତରେ ମରଣ ହୋଇଲା ।
ନାହିଁକି, କଳାଟି ରାଜନ ବଚନ ।
ନାଶ କୋପାନଳ ଅନ୍ତରେଁ ପ୍ରବଳ ଦହିବ ମୋ କ୍ଷଣ-ଜୀବନ ।୧।

ଏତେବେଳେ ଯେବେ ନିହତ ହୋଇବ ନିନ୍ଦା କରିବେ ରାଜାମାନେ ।
ସମରେ ଜୀବନ ହୋଇଲେ ନିଧନ          ସୁଖେ ବସିବି ସ୍ୱର୍ଗସ୍ଥାନେ
ଏମନ୍ତ, ଭାଳି କରେ ଘୋର ସମର ।
ମୁଷ୍ଟିକ ମୁଷ୍ଟି ଚଟକାଳ କରନ୍ତ          ଶବଦେ କମ୍ପେ ତନୁଧର ।୨।
ବାହେ ବନ୍ଧାବନ୍ଧି ମୁଣ୍ଡେ କୋଡ଼ାକୋଡ଼ି          ହିଆକୁ ହିଆ ପ୍ରହାରନ୍ତି ।
ଜାନୁକୁ ଜାନୁ ପାଦକୁ ପାଦ ବନ୍ଧ          ପଡ଼ି ଉଠି ପୁଣି ଗର୍ଜନ୍ତି ।
ନାସିକା,-ପବନ କି ଅବା ବତାସ ।
ଅଙ୍ଗକୁ ଅଙ୍ଗ ଚେପାଚେପି ହୁଅନ୍ତେ ବାହାର ହୁଅଇ ନିଃଶ୍ୱାସ ।୩।
(ଯେତେ ସାଧନ କଂସକୁ କହୁଥିଲେ          ସେ କାହିଁ ହୋଇଲା ଅନ୍ତର ।
କୁଳବଧୂ ଯେହ୍ନେ ବିଭଳିତ ହୋଇ          କେ କଲେ ମୋହନ ମନ୍ତର
ଗୋବିନ୍ଦ, ଅଙ୍ଗ ଲଦି ହେଲା ତେସନ ।
ମତ୍ତ ନକୁଳକୁ ନୟନେ ଦେଖିଲେ ମୃତ୍ତିକା ମାର୍ଜାର ଯେସନ ।୪।)

ବସ୍ତୁ ରଥଘାତ ପାଇଲେ ଯେମନ୍ତ ନ ସହ ହୁଅଇ କୁଣ୍ଡଳୀ ।
ମତ୍ତ ଦ୍ୱୀପିନ ସମ୍ମୁଖେ ପଡ଼ିଗଲେ ଯେହ୍ନେ କାତର ହୋଏ ଛେଳି ।
ମାତଙ୍ଗ, ସଙ୍ଗରେ କିବା ଯୁଝେ ଖର ।

ବନପତି ସଙ୍ଗେ ଘୁର ଶଶାସମ ମୂଷିକ ମାର୍ଜାର ସଙ୍ଗରେ ॥ ୫ ।

ବକ ଶାମଳ କାହିଁ ସମ ହୋଇବେ ସମୁଦ୍ର ସଙ୍ଗେ କ୍ଷୁଦ୍ର ନଦୀ ।
ଶ୍ୟେନ ସଙ୍ଗରେ ଆନ ଖଗ ତୁଲ କି, ନରେଶ ସଙ୍ଗେ ଜନ୍ମଭେଦୀ ।
ତେମନ୍ତ, କୃଷ୍ଣ ସଙ୍ଗେ ଦୁଷ୍ଟ ଅସୁର ।

ବେଳକୁ ବେଳ ବଳ କ୍ଷୀଣ ହୋଇଲା ନ ସହେ ହୋଇଣ ଉଦ୍ଧାର ॥ ୬ ।
ଦେଖି ପୁର-ନର-ନାରୀ ବିଚାରନ୍ତି କଂସଠାରୁ ନାହିଁ ଦାରୁଣ ।
କେଉଁ ସୁଖଶିରୀ ଅର୍ଜିବ ଏ ନନ୍ଦ— ନନ୍ଦନ ଦୁହିଁଙ୍କ ମାରଣ ।
ଦଇବ, ଧର୍ମ ଯେବେ ସତ ହୋଇବ ।

ରାମ ଗୋବିନ୍ଦଙ୍କୁ ସଙ୍କଟୁ ରଖିବ କଂସକୁ ସଂହାରିବ ଦଇବ । ୭ ।
ମଞ୍ଚାରେ ଅନାଇ ଜନକ ଜନନୀ ହୃଦରେ କରନ୍ତି ବିଚାର ।
କରିବୁ ନାନା ଦାନ ଦେବ— ଅର୍ଜନ ଏଥର ବଞ୍ଚିଲେ କୁମର ।
ବ୍ରାହ୍ମଣ-ମୁଖେ ଦେବୁଁ ମିଷ୍ଟ ଭୋଜନ ।

ଏତେ ଭାଳି ନେତ୍ରୁ ଲୋତକ ବହେ ମଣ୍ଡିକି ଲମ୍ବାଇ ଆନନ ॥ ୮ ।
ତାତ ମାତ ନର ନାରୀଙ୍କ ବିକଳ ଜାଣିଲେ ଜଗତଜୀବନ
ମତ୍ତ ମାଲ ଶିରେ ମୁଟି ପ୍ରହାରିଲେ ଗିରିପରେ ବଜ୍ର ଯେସନ
ଶବଦ, ଶୁଣି ରଙ୍ଗସଭା ଚମକି ।

ବୀରମାନଙ୍କର ମନେ ପ୍ରତେ ହେଲା ଯମ ରାଜା ବଜେ କଳିକି । ୯ ।
ଗୋବିନ୍ଦ ପ୍ରହାର ବାଜି ଥର ଥର କ୍ଷୋଣୀ ବହେ ଫାଟି ମୁର୍ଦ୍ଧନ ।
ଜ୍ଞାନ ହାରି ମହୀ ଉପରେ ଶୋଇଲା ଆନନ୍ଦ ହୋଇଲା ଅବନୀ ।
କ୍ଷଣକେ, ପୁଣି ଚେତା ପାଇ ଉଠିଲା ।
ଗୋପୀନାଥ ଶିରେ ବଜ୍ରସମ କରି ମୁଷ୍ଟିଏ ନେଇ ପ୍ରହାରିଲା । ୧୦ ।

ମତ୍ତହସ୍ତୀକ କୁମ୍ଭମଣ୍ଡା ପ୍ରାୟ— ଥିଲେ ସେ ହୁଅଇ ଯେମନ୍ତ,
ସେହିରୂପେ କୃଷ୍ଣ ଅଙ୍ଗକୁ ଲାଗିଲା ଦୁଷ୍ଟ ରାକ୍ଷସ ମୁଥା ଘାତ ।
ସେ ଘାତ, ସହି ଦନ୍ତ କରି ଧଇଲେ ।
ଚନ୍ଦ ଗଣ୍ଡ କରି ବୁଲାଇ ନିର୍ଘାତ କରି ଭୂମିରେ କଚୁଡ଼ିଲେ ।୧୧।
ଛୁଟିଲା ଜୀବନ ହୋଇଗଲା ଲୀନ ଗୋବିନ୍ଦ ଶ୍ରୀଅଙ୍ଗ ଦେଶରେ
କାମନା ଦହିଲା, ଶାନ୍ତିକ ବହିଲା, ପାତକ ଖଣ୍ଡିଲା ସତ୍ୱରେ ।
ପାମର, ମରନ୍ତା ନାହିଁକି କାଳରେ
ଶତ୍ରୁଭାବରେ ଶ୍ରୀକୃଷ୍ଣ କରେ ମଲା ରହିଲା ଅପୂର୍ବ ଧାମରେ ।୧୨।



# ଶ୍ରୀକୃଷ୍ଣ ଜନ୍ମ

( ସ୍ୱର୍ଗତ ଘନକୃଷ୍ଣ ଦାସ—ରସକଲ୍ଲୋଳରୁ )

( ରାଗ—ଚୌଦ୍ଦ )

କର ଆହେ ସାଧୁଜନ- ମାନେ ମନ ଏକ ଧ୍ୟାନ
କର୍ଣ୍ଣ ଦେଇ କମଳଲୋଚନ-କଥାକୁ ।
କଳିକଲୁଷସଂଘାତ ଉପରେ କରି ଆଘାତ
ସଶଙ୍କ ନ କର କାଳଦଣ୍ଡ ବ୍ୟଥାକୁ ।
କଳୀକରେ ଅନ୍ଧାର ପ୍ରାପ୍ତ,
କୃଷ୍ଣକଥା ଶ୍ରବଣରେ ଦୂରେତ ହୟ । ୧ ।
ନଉଣପକୁଳେ ଜାଗି ହୋଇ ଧରଣୀ ଦୁଃଖୀ
ବିନମ୍ର ହୋଇ ବ୍ରହ୍ମାଙ୍କ ଆଗେ କହିଲ,
କଂସ ଦ୍ରୁତାପରେ ଦେହ ନୋହିଲା ଅତି ଦୁଃସହ
କି କରିବି ଏବେ କହ ବୋଲି ବୋଇଲ ।
କୁଶକେତୁ ଶୁଣି ଏ କଥା,
କହିଲେ ଜଗନ୍ନାଥଙ୍କୁ ଅବସ୍ଥାବ୍ୟଥା । ୨ ।
କମଳମୁଖୀ କମଳା— କଣ୍ଠ ମରକତ ମାଳା
ଆଜ୍ଞା ଦେଲେ କରୁଣା କଟାକ୍ଷେ ଅନାଇ,
କିଛି ନ ଚିନ୍ତର ତୁମ୍ଭେ ଯଦୁକୁଳେ ଯାଇ ଆମ୍ଭେ
ଜାତ ହେବୁ କଂସ ପ୍ରାଣ ନେବା ପାଇଁ ।
କର ତୁମ୍ଭେ ଏବେ ଗମନ,
କରିବାକୁ ଗୋପକେଳି ଆମ୍ଭର ମନ । ୩ ।

କୃପାସିନ୍ଧୁ ଆଜ୍ଞା ପାଇ ପରମ ଆନନ୍ଦ ହୋଇ
ପଦ୍ମଯୋନି ପରବେଶ ହୋଇଲେ ପୁରେ,
କଷ୍ଟ ଧନ ଅନ୍ତେ ହରି କୋଟି କାମରୂପ ଧରି
ରହିଲେ ଯାଇ ଦେବଙ୍କ ଦେବୀ ଗର୍ଭରେ
କେତେ ଦିନେ ହୋଇଲେ ଜାତ,
କେ ଅବା କହିବ ତାହାଙ୍କର ଚରିତ । ୪ ।

କରେ ଶଙ୍ଖ ଚକ୍ର ଧରି - କଂସଠାରେ କୋପ କରି
ବାଳକାଙ୍କ ପରବେଶ କଲେ ପ୍ରକାଶ,
କଣ୍ଠେ କଉସ୍ତୁଭ-ମଣି କୋଟି ଶଶଧର ଜିଣି
କିରଣ ପ୍ରକାଶ ପାପ ଅନ୍ଧାର ନାଶ ।
କଟିତଟେ ପୀତବସନ,
କଳାମେଘ କୋଳରେ ବିଜୁଳି ଯେସନ । ୫ ।

କର୍ଣ୍ଣେ ମକରକୁଣ୍ଡଳ ଝଟକେ ଗଣ୍ଡମଣ୍ଡଳ
ମସ୍ତକରେ ମଣିମୟ ମୁକୁଟ ଶୋଭେ,
କଳିତ-ଲଳିତ ହୃଦ— ଦେଶରେ ଶ୍ରୀବାହୁପଦ
ଭୃଗୁରାମି ନାଥ ଭକ୍ତଭାବରେ କହେ ।
କୋଟି କାମ ନିନ୍ଦେ ଶ୍ରୀଅଙ୍ଗ
କରେ କଙ୍କଣ, ଚରଣେ ନୂପୁର ସଙ୍ଗ । ୬ ।

କରି ଏ ରୂପ ଦର୍ଶନ କଲେ ସ୍ତୁତି ନିବେଦନ
ଜନକ ଜନନୀ ଅତି ଆଶ୍ଚର୍ଯ୍ୟ ହୋଇ,
କହୁଁ କହୁଁ ମାୟା କରି ସେ ରୂପ ସମ୍ବରି ହରି
ବାଳମୁକୁନ୍ଦ ମୂରତି ହେଲେ ଗୋସାଇଁ ।
କଂସର ଯେତେକ ପାହାରି,
କାଳ ନିଦ୍ରାରେ ଚେତନା ନାହିଁ କାହାରି । ୭ ।

କଲି କାଳେ କନ୍ୟାଦାନ ବସୁଦେବେ ଉଗ୍ରସେନ
କଉତୁକେ କଂସ ରଥ ବାହୁ ଯେ ଥିଲା,
କୋମଳ ଗମ୍ଭୀର ବାଣୀ ଆକାଶମଣ୍ଡଳୁ ଶୁଣି
ଭଗ୍ନୀ ଭଣୋଇଙ୍କି ନେଇ ଶାଙ୍କୋଳ ଦେଲା ।
କାଳେ ସେ ଚରଣୁ ଫିଟିଲା,
କରିବାକୁ ବଜେ ଶୁଭଲଗ୍ନ ଘଟିଲା । ୮ ।

କରେ ଧରି ସୁତ ଧୀରେ ଗମନ କରନ୍ତେ ଖରେ
ଉଗ୍ରସେନ ଆସି ଓଗାଳିଲା ଆଗରେ
କରେ ଶଙ୍ଖ ଚକ୍ର ଧରି ଦରଶନ ଦେଇ ହରି
ପ୍ରବେଶ ହୋଇଲେ ଗୋପେ ନନ୍ଦ ମନ୍ଦିରେ ।
କ କ ହୋଇ ଦଇବ ଯୋଗେ,
କୁମାରୀ ହୋଇଛି ନନ୍ଦଙ୍କର ସେ ଲାଗେ । ୯ ।

କରି ତାହା ପ୍ରତିଦାନ ସତ୍ୱରେ କରି ଗମନ
ପ୍ରବେଶ ହୋଇଲେ ବସୁଦେବ ମନ୍ଦିରେ
କୁଆଁ କୁଆଁ ବାଣୀ ଶୁଣି ଉଠିଲେ ରକ୍ଷକଶ୍ରେଣୀ
କହିଲେ କଂସକୁ ଯାଇ ବସି ଶେଯରେ ।
କଠୋର ହୃଦୟ ଦଇତ,
କରିବାକୁ ନାଶ ତା ଅଇଲା ତ୍ୱରିତ । ୧୦ ।

କ୍ରୋଧଭରେ ବୋଲେ ବାଣୀ ଦିଅ ସେ ବାଳକ ଆଣି
କାଳ ମୋର ଜନମିଛି ତୁମ୍ଭ କୁଳରେ,
କହିଥିଲେ ଦେବଗଣ ଅବଶ୍ୟ ତୋହର ପ୍ରାଣ
ନେବ ଏହାର ଅଷ୍ଟମଗର୍ଭ ବେଳରେ ।
କରିବି ମୁଁ ତାହାକୁ ନାଶ,
କଲେ ହେଳା ଶତ୍ରୁଠାରେ ନ ପାଇ ଯଶ । ୧୧ ।

କର ଯୋଡ଼ି ବସୁଦେବ          ବୋଲଇ ଶୁଣ ହେ ଦେବ
କୁମର ମୂହଇ ସେ ହୋଇଛୁ କୁମାରୀ,
କରୁଣାହୃଦୟ ତୁଅ          ମୋତେ ଏ ଦୁହିତା ଦିଅ
ବଞ୍ଚିଲେ ତୁମ୍ଭର ଏ ନୋହେ ବଇରୀ,
କଲେହେଁ ଅନେକ ଯତନ,
କଳା ଧଳା କରିବାକୁ କେ ବା ଭାଜନ ? ୧୨ ।

କର୍ପୂରେ ଚନ୍ଦନ ଦେଇ          ରସୁଣ ରୋପିଲେ ନେଇ
କେତେ ବେଳେ ଛାଡ଼ଇ କୁତ୍ସିତ ବାସନା ?
କୁଟିଳ ଦୁଷ୍ଟ ନାସ୍ତିକ          ମହାପାପୀ ଅବିବେକ
ଲୋକଙ୍କ ସ୍ୱଭାବ ସେହି ପ୍ରକାରେ ସିନା,
କୋକିଳବଚନ ମଧୁର
କରଇ ବିଯୋଗୀ ଜନମନ ବିଧୁର । ୧୩ ।

କଳି ମନରେ ବିଚାର          ବିଷ୍ଣୁ ମାୟା ଅଗୋଚର
କାମିନୀ ରୂପେ ମାରନ୍ତି ବଇଲୋଚନ,
କରନ୍ତି ଶିବଙ୍କୁ ଯାହା          କର୍ଣ୍ଣେ ଶୁଣିଅଛୁ ତାହା
କେମନ୍ତେ ଏହାକୁ ମୁଁ କରିବି ମୋଚନ ।
କାତ୍ୟାୟନୀ ସୁବର୍ଣ୍ଣ ହୋଇ,
କଉଣପ କୁଳକୁ ସେ କି କରି ନାହିଁ ? । ୧୪ ।

କରେ ଧରି କୁମାରୀକି          କଚାଡ଼ନ୍ତେ ଶିଳେ ଟେକି
ଆକାଶମଣ୍ଡଳେ ଦେବୀ ଯାଇ ରହିଲେ ।
କାରଣ ନ ଥାଇ ମୋତେ          କୋଟ କ୍ଳୁ କଲୁ ଯେ ଚଣ୍ଡେ
କାଳେ କାଳକୁ ଦେଖିବୁ ବୋଲି ବୋଇଲେ ।
କମ୍ପ ହେଲେ ଅନ୍ତରନ୍ଧ୍ର,
କୁଲାଳଚକ୍ର ପରାଏ ଭ୍ରମିଲା ଚିତ୍ତ । ୧୫ ।

ଜନ୍ମ ପୁଣି ସେ ବର୍ଷର          କେଶୀ, ଅଘା, ବକାସୁର
ଶକଟା, ତୃଣାବର୍ତ୍ତକ, ପୂତନା ଡାକ,
କରିବ ତୁମ୍ଭେ ଏତେକ          କଅଁଳା ପୁଅ ଯେତେକ
ମାରିବାକୁ ଯେ ଯାହାରେ ରହିବ ଠାକ ।
କଂସ ଆଜ୍ଞା ପାଇ ସେ ଦୂତେ,
କଲେ ବାଳକନାଶନ ଉପାୟ ଚିତ୍ତେ । ୧୬ ।

କମଳନୟନ ହରି          ନନ୍ଦପୁରେ ବିଜେ କରି
କଲେ ନାନା ଉତ୍ସବ ଆନନ୍ଦ ଭିଆଣ,
କେତେଠାରେ କେତେ ଗୀତ          କେତେ ରୂପେ ହୋଏ ନୃତ୍ୟ
କହିବାକୁ ବଚନେ କେ ଅବା ସିହାଣ,
କଲେ ସୂତଗୃହ ବିଧାନ,
କେ କହିବ ନନ୍ଦ ଦେଲେ ଯେତେକ ଦାନ । ୧୭ ।

କନକର ଦୀପାବଳୀ          ବିଶପାରୁଶରେ ଜାଳି
ଗୁରୁଚନ୍ଦ୍ରାତପମାନ ନେଇ ମଣ୍ଡିଲେ,
କର୍ପୂର ଚନ୍ଦନ ଛଟା          ପକାଇ ସେ ପୁର ଶୋଭା
କରାଇ ଅଳକାପୁର ଶୋଭା ଖଞ୍ଜିଲେ ।
କନ୍ୟା ଖମ୍ବେ ଖଟାଇ ଦୋଳି
କୁମାରକୁ ଶୁଆଇ ଦେଲେ ଦୁଳଦୁଳି । ୧୮ ।

କାମପାଳ ଆଗୁ ତହିଁ          ଜାତ ହୋଇଥିଲେ ରହି
କ୍ରମେ ବେନି ଭାଇ ପାଇ ହୋଇଲେ ସଙ୍ଗ
କାଳିନ୍ଦୀ ସୁରସରିତ          ହୋଇଲ ପ୍ରାୟେ ଏକତ୍ର
କମନୀୟ ଦିଶେ ଧଳା କଳା ଶ୍ରୀଅଙ୍ଗ,
କରିବାକୁ କଳୁଷ ନାଶ
କଳିବନ୍ଧ ମଧ୍ୟେ ବେନି ତୀର୍ଥ ପ୍ରକାଶ । ୧୯ ।

ଯାଉଇ ପବନ୍ତ ଆନ ତୀର୍ଥଜଳେ କଲେ ସ୍ନାନ

ଏତୀର୍ଥ ନାମରେ ନାନା ଦୁରିତ ନାଶେ,

କଇବଲ୍ୟ ଲଭ ହେଲେ ନ ପଡ଼ ଜଠର ଜଳେ

ବଇକୁଣ୍ଠେ ବସି ବଇକୁଣ୍ଠ ସନ୍ତୋଷେ,

କର ଏହି ତୀର୍ଥ କୀର୍ତ୍ତନ,

କରୁଥାଇ ଧାନକୃଷ୍ଣ ସୁଖେ ନର୍ତ୍ତନ । ୨୦ ।

# ଶରତ୍ ବର୍ଣ୍ଣନା

( ସ୍ୱର୍ଗତ ଘନକୃଷ୍ଣ ଦାସ—ରସକଲ୍ଲୋଳରୁ )

( ରାଗ—କେଦାର, ଚକ୍ରକେଳି ବାଣୀ )

କ୍ରମେ ପ୍ରବେଶ ହୋଇଲା ଶରଦ ।
କମଳଧରେ ବସିଲେ ଷଟପଦ ।
କୃପଣ ହୋଇଲେ ଅମୃତ ଦାନେ
କେବଳ ଭମ୍ବୁଦ ହେଲେ ଗର୍ଜନେ ।
କକୁଭ ନଭ ଦଶିଲେ ଶୋଭା
କଲେ ପ୍ରକାଶ ପୁଷ୍ପବନ୍ତେ ପ୍ରଭା । ୧ ।
କଳୁଷ ନଦୀଜଳରୁ ଛୁଟିଲେ
କମଳ କୁମୁଦମାନେ ଫୁଟିଲେ ।
× × ×
× × ×
କମଳା ନେତ୍ର-ଛନ୍ଦକ ପ୍ରାୟେ
ନୀରରୁ ଶଫରୀ କମ୍ପାଇ କାୟେ । ୨ ।
କମଳାୟୁ ଦର୍ଶେ ପୁଲକକୂଳ
କଠିନ ହୋଇଲେ ମଞ୍ଜୁ-ଜମ୍ବାଳ ।
କୃଷ୍ଣ ଅଙ୍ଗରେ ପୀତବାସ ପ୍ରାୟେ
କେଦାରେ ପକ୍ୱଶାଳି ଶୋଭା ପାଏ
କୁମାରୀ ଗୀତ ଶୁଭେ ବହୁତ
କରଇ ହରଷ ଜନଙ୍କ ଚିତ୍ତ । ୩ ।

କେଉଁଠାରେ ଶ୍ୱେତ ଛତ୍ର ଆକୃତି
କମନୀୟ ଦିଶେ ଶିଲୀନ୍ଧ୍ରତତି ।
କାମଦେବ-ଶ୍ୱେତ-ଚାମର ପ୍ରାୟେ
କାଶତଣ୍ଡୀ ଫୁଲ ଚଳନ୍ତି ବାୟେ ।
କୁସୁମ-ବନ୍ତ ବନ୍ଧୁକ ଫୁଲ
କାନ୍ତାକାନ୍ତ ଦନ୍ତ-ବସନ ତୁଲ । ୪ ।

କାନ୍ତରହିତ କାନ୍ତା ପ୍ରାୟେ ହୋଇ
କଳାପୀ କଳାପ ଅଙ୍ଗୁ ପକାଇ
କେକା ଛାଡ଼ି ହେଲେ ମଉନବ୍ରତ
କଲେ ହଂସ ମାନସର ତ୍ୟଜତ ।
କଣ୍ଠକୁ ତାର-ଗ୍ରାମରେ ଯନ୍ତ୍ରୀ
କରେ ଗଗନେ ଗମନ କରନ୍ତି । ୫ ।
କପର୍ଦ୍ଦୀ-ଯାନମାନେ ହେଲେ ମତ୍ତ
ଫଳେ ଲୋଧ୍ରତରୁ କୁସୁମ ଜାତ ।
କୋରକିତ ହେଲେ ଅଗସ୍ତି ଦ୍ରୁମ
କଳାକରଖଣ୍ଡ ପ୍ରାୟେ ସୁଷମ ।
କୃପଣ ଲୋକ ହୋଇଲା ପରାୟେ
କଷ୍ଟ ପାଇଲେ ଗୃହକ ପକ୍ଷୀଏ । ୬ ।
କମଳ ମୋଦକ-କୁମାର ଦିଶେ
କୁସୁମ୍ଭ-ଘୃତ ରଶ୍ମିରେ ଦିଶେ ।
କେତେ କହିବି ଶରଦ ବର୍ଣ୍ଣନା
କହିଲେ ଅନେକ ହୋଇବ ସିନା ।

କମଳନେତ୍ର ଦେଖିଲେ ଦିନେ
କୁମୁଦବନ୍ଧୁ ଉଦୟୁ ଗଗନେ । ୭ ।

କରିଅଛି ସବୁ ଦିଗ ଧବଳ
କମଳାପ୍ତ ଦଶେ ମହୀମଣ୍ଡଳ ।
କର୍ପୂର ମୋଡ ବଞ୍ଚଳ ପରାଏ
କି ଅବା ଛିଟି ହେଲା କ୍ଷୀରମୟେ ।
କାହାର ଯଶ ପ୍ରକାଶ ହୋଇ
କେତେ ଶୁକ୍ଳକୁ ଦେଲା ଲୁଚାଇ । ୮ ।
କାଦମ୍ବକୁଳ ନୋହି ଦେଖା ଦେଖି ।
କଳରବ କରି ହୁଅନ୍ତ ଦୁଃଖୀ ।
କୁଞ୍ଜର କୁଞ୍ଜ ନ ଥିଲା ପରିପ୍ରେ
କରାଇ ଜନମନକୁ ସଂଶୟେ ।

× × ×
× × ×

# ବୁଢ଼ା ନାଉରୀ

( ସ୍ୱର୍ଗତ ମନକୃଷ୍ଣ ଦାସ—ନାବକେଳୀରୁ )

ଏମନ୍ତ ବତ୍ସର     କରନ୍ତେ ଏଣେ<br>
ନାବ ଗୋଟାଏକ     ଦିଶିଲା ତେଣେ ।<br>
ଅଖାଳ ଦଉଡ଼ି     ବାନ୍ଧନ୍ତି ଟାଣି<br>
ତଳସ୍ଥ ନାବରୁ     ଉଦ୍ଧନ୍ତି ପାଣି ।<br>
ପାକଲା ଦଉଡ଼ି     କନ୍ଧରେ ପାଡ଼ି<br>
ନାବ ପୂର୍ବମୁଣ୍ଡେ     ବସିଛି ମାଡ଼ି ।<br>
ମୀନ ଖାଲୁଆଙ୍କ     ଅନ୍ନ ଯାହାର<br>
ଜାଲ ପଡ଼ିଅଛି     ନାବ ଭିତର ।<br>
ଛମାଳ କରି     ଗୀତ ପଦେ ଗାଇ<br>
ଘୁଞ୍ଚି ରହି ନାବ     ନେଉଛି ବାହି ।<br>
ଅତି ଚରପଟ     ଖାଙ୍କର କେଶ<br>
ଦେଖି ନ ହୋଇବ     ମନ୍ତ୍ର ବେଶ ।<br>
ବେଦ୍ଧା ନୟନରୁ     ଲୋତକ ବହେ ।<br>
ବାଙ୍କ ନୟନେ     ନେଉଅଛି ଚାହିଁ ।<br>
ଚୋପଡ଼ା ଦୋଳନ୍ତି     ଦାନ୍ଧାଣି ଗୋଡ଼<br>
ଚୁକୁଟର ଚଢ଼ିନ୍ତି     ପାକଲ ଥୋଡ଼ ।<br>
କଳା ଦେହ ତାର     ବୟସର ଚୋଟା<br>
ଦାନ୍ତ ନାହିଁ ବୁଢ଼ା     ମାଳୁଆ ଗୋଟା ।<br>
ବଚନ କହିଲେ     କୋମଳ ଭାବେ<br>
ହସିଲେ ବୁଢ଼ା     ପରପଞ୍ଚ ଦଶେ ।<br>
ଆମ୍ଭେ ଦେଖି ତାକୁ     ନିକଟ ହୋଇ<br>
ନାବ ଆସ ବୋଲି     ଡାକିଲୁ ଗୋଇ

ଜଣେ ଜଣେ ତୋତେ
ପାରି କରି ଦେଲେ
ଆମ୍ଭ ନ ହୋଇଲା
ଆଜ ଘଡ଼ିକେ
ସକାଳ ପହରୁ
ବେଗେ ନାବ ଆଣ
ଅନେକ ପ୍ରକାରେ
କେହିଁ ନ ଆସିଲୁ
ବଦନ ଟେକ
ଏଣିକି ବୋଇଲେ
କାଲି ଯେସନେ
ଡାକ ଡାକ ମଲେ
ମନତାପ କରି
ଗାଳି ଦେଲୁ ତାକୁ
ପଡ଼ ନ ମଲୁରେ
କାଲି ହୋଇଲୁ କି
ଡାକ ଡାକ ଆମେ
ସାପ ଖାଉ ତୋର
ଦାଇବ ଯେମନ୍ତେ
ବୁକୁରେ ତୋର
ନାବମଙ୍ଗ ଖଣ୍ଡ
ମଝି ନଈରେ ତୁ
ଅଖାଳ ଦଉଡ଼
ନାବ ବୁଡ଼ୁ ତୋତେ

କଉଡ଼ି ଦେବୁ
ମଥୁରା ଯିବୁ ।
ବିକା ଗୋରସ
ସବୁ ଯିବ ନାଶ ।
ଅଛୁଁ ଅନାଇ
କେଉଟ ଭାଇ ।
ଡାକିଲୁ ତାକୁ
ଆମ ପାଖକୁ ।
କଣିଆଇ ଗ୍ରୀବେଁ
ତେଣିକି ଯାଏ ।
ଥାଇ ପାଖେ ରହି
ଶୁଣଇ ନାହିଁ ।
ଅତି ଧିକ୍‌କାରେ
ନାନା ପ୍ରକାରେ ।
ଜାଉଁଆ ଗୋଟା
ଆରେ କେଉଟା ?
ମରୁଛୁଁ ଏଣେ
ବେନ ଶ୍ରବଣେ ।
ହୋଇବ ସତ
ମାଡ଼ିବସୁ ଭୂତ ।
ପଡ଼ିବ ଛିଡ଼ି
ମରିବୁ ବୁଡ଼ି ।
ଛିଡ଼ିଣ ଯାଉ
କୁମ୍ଭୀର ଖାଉ ।

## ସୀତା ହନୁମାନ ସମ୍ବାଦ

( ସ୍ୱର୍ଗତ ବିଶ୍ୱନାଥ ଖୁଣ୍ଟିଆ—ବିଚିତ୍ର ରାମାୟଣରୁ )

(ରାଗ—ଆହାରୀ, ଆଦ୍ୟମାର୍ଗଶୀର ବାଣୀ )

କହ ହନୁ ମୋର କାନ୍ତର କୁଶଳ ଲକ୍ଷ୍ମଣରେ ସବ କୁଶଳ,
ମରକତ ହେମ ବେନି କଳେବର ହୋଇ ନାହାନ୍ତି ନା ଦୁର୍ବଳ ।
ହନୁ ହେ, ବେନି ଭାଇଙ୍କର କୁଶଳ ।
କୁଶଳ କରି ଲକ୍ଷ୍ମଣ ସେବା କରୁଥାନ୍ତି କି ପାଦକମଳ ?
ମୋର ବିଚ୍ଛେଦ ହୋଇଲା ହନୁ ତନୁ ଦୁର୍ବଳ ହୋଇଥିବ ତାର ।
ଅଧୈର୍ଯ୍ୟ ହୋଇଲେ ଲକ୍ଷ୍ମଣ ତାହାଙ୍କୁ କରାଉଥାନ୍ତି କି ଧୀର ।
ହନୁ ହେ, ମୋତେ ଏଥୁଁ ମୋକ୍ଷ ନେବେ କି ?
ବାନରବଳ ଘେନି ସିନ୍ଧୁ ପାଦ ନ ହୋଇ ଏଥକୁ ଆସିବେ କି ?

× × ×

ବୋଲାଇ ହେ ହନୁ କାନ୍ଧରେ ବସାଇ ଶ୍ରୀରାମ-ପାଶେ ଘେନି ଯିବ,
ମୁଁ ଲଜ୍ଜାରେ ମୁହିଁ କେମନ୍ତ ପ୍ରକାରେ ପରପୁରୁଷ ଅଙ୍ଗକୁ ଛୁଇଁବ ।
ହନୁ ହେ, କେବଳ ରାବଣ ଆଣିଲା ।
ତୁମ୍ଭେ ମୋତେ ଘେନଗଲେ ପ୍ରଭୁଙ୍କ ଯଶ ଆଉ କାହିଁ ରହିଲା ?
ବିଭୀଷଣନନ୍ଦନା ଆସିଣ ଏଠାକୁ କହେ ଯେ ବେନି ମାସ କାଳ,
ବେନି ମାସେ ମୋତେ ଶ୍ରୀରାମ ଲକ୍ଷ୍ମଣ ଦେଖାଇବୁ ବୋଲି ବୋଇଲା,
ହନୁ ହେ, ଏକମାସ ଥିବ ପ୍ରାଣ ହେ ।
ପ୍ରାଣ ଥାଉଁ ଥାଉଁ ଶ୍ରୀରାମ ଲକ୍ଷ୍ମଣ ଶୀଘ୍ର କରି ତୁମ୍ଭେ ଆଣ ହେ ।

କମ୍ପା ହନୁ ମୋର ପାଇଁ ରାମ ଦେଲେ କରପଲ୍ଲବରୁ ମୁଦ୍ରିକା,
ଶୂନ୍ୟ ଯେ ହୋଇଥିବ ମୋ ପ୍ରଭୁଙ୍କର କରକମଳ ଅନାମିକା ।
ହନୁ ହେ, ଏ ମୁଦ୍ରିକା ନୋହେ ଅନ୍ତରେ ।
ପ୍ରଭୁଙ୍କ କରେ ଥାଇଣ ମୋର ହନୁ ଭ୍ରମେ ଥାଇ ନିରନ୍ତର ।
ମୁଦ୍ରିକା ମସ୍ତକେ ଲଗାଇ ଆପଣା ପଣନ୍ତରେ ବାନ୍ଧି ରଖିଲେ,
ମସ୍ତକୁଁ ମଣି ବାହାର କରି ପୁଣି ହନୁ-କରରେ ସମର୍ପିଲେ
ହନୁ ହେ, ମୋ ଆଗରେ କରୁଣା କରିବେ ।
ଦୀନଜନଠାରେ କରୁଣା କଲେ ଟି କରୁଣାସିନ୍ଧୁ ବୋଲାଇବେ ।
କହିବ ହନୁ ହେ ଏତେକ ମୋହର ମୋହର ବିନୟ ଉଦନ୍ତ ।
କେବଳ ମୋହର କଲ ଅପରାଧ କ୍ଷମା କରିବେ ମୋର କାନ୍ତ ।
ହନୁ ହେ, ପ୍ରବୋଧ କରିଣ କହିଇ ।
ବୋଲେ ବିଭି ରାମ ଗ୍ରାମରେ ଜଣାଇ ନିକଟେ ଆଣିବ ବୋଲଇ ।

---

# ରାବଣର ଛତ୍ରଭଙ୍ଗ

( ସ୍ୱର୍ଗତ ବିଶ୍ୱନାଥ ଖୁଣ୍ଟିଆ—ବିଚିତ୍ର ରାମାୟଣରୁ )

ମନ୍ତ୍ରୀ ମୁଖୁ ଶୁଣି କୋପେ ବାଣପାଣି ପୁଷ୍ପକଯାନେ ବିଜେ କଲ ।
ଧନୁଶର ଧରି ଆକାଶେ ରହିଣ ସୁବେଳ ଗିରିକି ଚାହିଁଲ ।
ତୋଳେ ଦେଖିଲ, ଦୁର୍ବାଦଳ ରାମ ଶରୀର ।
ବ୍ରହ୍ମାଣ୍ଡ-ଶୋଭା କି ଯେହ୍ନେ ଅବତାର ମୃଦୁମନ୍ଦ-ହାସ ପରିସର । ୧

ବିଚିତ୍ର ମୃଗଚ୍ଛାଲ ପରେ ବିଜୟ ସୁଗ୍ରୀବ ଊରେ ଆଉଜିଣ ।
ଦକ୍ଷିଣ ଭୁଜ ତାରାସୁତ କନ୍ଧରେ ହନୁ ଗୃହେ ବାମଚରଣ ।
ଲଙ୍କାଗଡ଼ରେ, ପଡ଼ିଛି କୋପ ନେତ୍ର କୋଣ ।
ଶ୍ରୀରାମ ବାମ ପାର୍ଶ୍ୱରେ ବସିଣ ଶର ସଳଖନ୍ତି ଲକ୍ଷ୍ମଣ । ୨ ।

ସମ୍ମୁଖରେ ଜାମ୍ବବ ଯେହ୍ନେ କର ଯୋଡ଼ି ଜଣାନ୍ତି ଯୁଦ୍ଧ ଅନୁକୂଳ ।
ଗୁଣ ଦେଇଣ କୋଦଣ୍ଡ ଧରିଛନ୍ତି ବାମଅଙ୍ଗ-କରକମଳ ।
ଦକ୍ଷିଣ କର-ପଲ୍ଲବେ ଶୋଭେ ତୀକ୍ଷ୍ଣ ଶର ।
ସୁବାସ କୁସୁମେ ସୁକଣ୍ଠ। ମଣ୍ଡିତ ବନକୁସୁମ ମାଳା ଉର । ୩ ।

ମେଘଖଣ୍ଡପ୍ରାନ୍ତୁ ଗଗନେ ଦେଖିଣ ପଚାରୁଛନ୍ତି ସୀତାପତି
ଆହେ ଲଙ୍କାପତି [illegible] କାହା ସ୍ୟ କାନ୍ତ ରୀତି ।
କର୍ଣ୍ଣେ କହିଲ, କରି ବନ୍ଦନେ ବିଭୀଷଣ ।
ଅଙ୍ଗୁଳି ଯେହ୍ନେ ଦେଖାଇ ବୋଲେ ଦେବ ସୈନ୍ୟ କରୁଅଛି ରାବଣ ।୪।

ଶ୍ରୀରାମ ଶ୍ରବଣେ ଏମନ୍ତ କହନ୍ତେ ଅନାଇଥିଲା ଦଶଶିର ।
ବୁଲାଇଣ ଗଦା ପ୍ରହାର କରନ୍ତେ ଧଇଲା ମରୁତ କୁମର ।
ଦେଖି ଶ୍ରୀରାମ, କୋଦଣ୍ଡେ କାଣ୍ଡ ବସାଇଲେ ।
ରାବଣ ଧନୁ ମୁକୁଟ ସବୁ ଛତ୍ର ଛେଦ ବୋଲିଣ ଆଜ୍ଞା ଦେଲେ ।୫।

ଆଜ୍ଞା ପାଇଣ ଶର ଧନୁ ମୁକୁଟ କାଟିଲା ତାହାର ସବୁହି ।
ଏକାବେଳକେ ଛୁଟିଣ କି ପଡ଼ିଲା ଗ୍ରହ ସଙ୍ଗେ ସବୁ ନକ୍ଷତ୍ର ।
ତହିଁ କଅଁବା, ଗଜ ମୁକୁତା ହେଲା ବୃଷ୍ଟି ।
କଅଁବା ମଲ୍ଲିକା କୁସୁମେ ରାମଙ୍କୁ ଅଞ୍ଜଳି ଦେଲେ ପରମେଷ୍ଠି ।୬।

ରାମବାଣ ଠାଣ ଦେଖିଣ ରାବଣ ଲଙ୍କାପୁରରେ ପଳାଇଲା ।
ଛେଦନ କଲେ ଯେତେ ଛତ୍ର ତାହାର ସିନ୍ଧୁ ଗର୍ଭରେ ସେ ପଡ଼ିଲା ।
ଚିନ୍ତା-ଜଳରେ, ମନ-ମୀନ ତାର ବୁଡ଼ିଲା ।
ବୋଲେ ବଳି ସୀତା ହରିଲା ଦିନରୁ ଦଇବ ତାହାକୁ ଛାଡ଼ିଲା ।୭।

---

## ଶ୍ରୀରାମଙ୍କର ଗଙ୍ଗାରେ ନୌଯାତ୍ରା

( ଶ୍ରୀରାମଚନ୍ଦ୍ର ଗଙ୍ଗାନଦୀ ପାର ହେଲା ବେଳର ଦୃଶ୍ୟ
କବି ଉପେନ୍ଦ୍ରଭଞ୍ଜ ବୈଦେହୀଶ ବିଳାସରେ
ବର୍ଣ୍ଣନା କରିଅଛନ୍ତି )

( ରାଗ—ବୃନ୍ଦାବତୀ )

ବସ୍ତ୍ରୁ ପଥୀ ବସ୍ତ୍ରୁ ପଦ ବିକାର ଭେଦ ଶବଦ
ତରଣୀରେ ଗତାଗତ ନାହିଁ ଉଚିତ,
ବଶାରଦ ସେ ପ୍ରାମନ୍ତ ମନ୍ତ୍ରରେ ଦାସ ମେଦିତ
ତାଙ୍କୁଁ ନ ଶୁଣନ୍ତେ ରଘୁନାଥ କଥିତ ।
ବଧିର ପ୍ରାୟେକ ତୁହି
ବେଳେ ନେଇ ତାଳ ଶୁଣ ଉଦାର ନୋହି ।
ବଧିର ମୁହଇ ବୀର ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା,
ବାଲ ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା ।
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ~~ପାଦ~~ ନ ଧୋଇ ~~ନାବ~~ ।
(ବଢ଼ାଇ ଦେଲେ ପୟର ଭାବଗ୍ରାହୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି,
ବ୍ରହ୍ମାରେ ଧୌତ ଯେ ପଦ ନୋହନ୍ତି ଶିବ ବିଷାଦ
ନ ପାଇ ଚରଣାମୃତ ପାନକୁ ଇଚ୍ଛି ! )

ବିଲ୍ୱାମା କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତପାବନ ନାମ ରହିଲା ।
(ବିଶ୍ୱ ପଲ୍ଲବ ନାବରେ, ପଦ ବିକଳ୍ପି ମନରେ
ପ୍ରତିହାରୀ ପଟ୍ଟରେ ମଣାଇ ବସାଇ
ବିଶ୍ୱାମିତ୍ରଙ୍କୁ ଶ୍ରୀରାମ ଚଗ୍ରଚଲେ ଗଙ୍ଗାନାମ
ଭଗୀରଥୀ କପାଁ ହେଲା କହ ଗୋସାଇଁ ।
ବିଷ୍ଣୁ ନଖକୋଣେ ଏ ଥିଲା
ବାମନାବତାରେ ଭଗୀରଥ ଆଣିଲା ! )
ବିଧିପୂର୍ବ କର ଚିନ୍ତି ସମସ୍ତ ଚରିତ ଭ୍ରାନ୍ତି
ଚଞ୍ଚ ତ ଲ୍ପଚିତ ଯାଇଁ ଲାଗେ କୂଳର,
ବିହାରୀ ହେଲେ ମାର୍ଗର ମାର୍ଗଣ କମାଣ-ଧର
ମାର୍ଗଣ ଶୋଭା ଲେଶକୁ କନ୍ଦର୍ପ ଯାର ।
ରତ୍ନବେଦ ମଣ୍ଡଳେ ପ୍ରବେଶ
ବାରବେନ୍ଦପୁରସାର ମୋହନ ପୁଂସ ।

---

# ସୁଗ୍ରୀବ ସହିତ ଶ୍ରୀରାମଙ୍କ ମିତ୍ରତା

( ସ୍ୱର୍ଗତ ଉପେନ୍ଦ୍ରଭଞ୍ଜ—ବୈଦେହୀଶ ବିଳାସରୁ ।

(ରାଗ—ଚକ୍ରକେଳି ବାଣୀ )

ବୋଲେ ସୁଗ୍ରୀବେ ରାମ କ୍ଳେଶଭାଷା

ବେନିଜନେ ପଡ଼ିଛୁଁ ଏକ ଦଶା ॥

ବିଭାବସୁ ବଂଶେ ଜାତ ଆମ୍ଭର

ବିଧିରେ ତ ତୁମ୍ଭେ ତାଙ୍କ କୁମର ।

ବସୁ ଅଯୋଧ୍ୟା କର୍ଷି ଵିଧ୍ୟା ରାଜନ

ବାଳ୍ମିକରେ ବନେ ହେଲା ସଦନ ॥

ବାମା ବିଚ୍ଛେଦ ପରଧରଧଣେ

ଦଞ୍ଚି ବନ ଫଳ-ମୂଳ ଭକ୍ଷଣେ ।

ବନ୍ଧୁ ଅନୁଜ ମନ୍ତ୍ରୀ ପ୍ରବୋଧନେ

ବୋଧ ହୋଇ ରହିଥାଇ ଜୀବନେ ॥

ବାଧା ମାତା ଭ୍ରାତାରେ ଉପୁଜନ୍ତି

ବଇରୀକି ସାଧିବା ଇଚ୍ଛା ଅଛି ॥

ବ୍ୟବହାରେ ମିତ୍ର ହେବା ଉଚିତ

ବୋଲେ ସୁଗ୍ରୀବ ଶୁଣ ରଘୁସୁତ ॥

ବୁଲି ଧରଣୀ ନିର୍ଭୟରେ ତୁମ୍ଭେ

ବାଳି ଡରେ ଗିରିରେ ଲୁଚି ଆମ୍ଭେ ॥

ବଳବନ୍ତ ହେଲେ ଯଥା କେଶରୀ

ବଧେ ଗଜାଦି ଶରଭଙ୍କୁ ଧରି ॥

ବନ୍ଧି ପାରିବ କେଉଁ ଉପକାର
ବୋଲେ ମିତ୍ର ହେବା ତୁମ୍ଭ ଆମ୍ଭର ॥
ବୋଲେ ରଘୁବୀର ଶୁଣି ଉତ୍ସୁକେ
ବନ୍ଧ ପକାଇବ ବାଳି ବାଣକେ ।
ବ୍ରହ୍ମଲୋକେ ଥିଲେ ସୀତା ଖୋଜାଇ
ବାଦ ରଚନେ ଆଣିବ ସେ କହି ॥
ବୀର ଏ କପି ମୋର ସଙ୍ଗେ ଅଛି
ବାଳଭାନୁ ଜନ୍ମୁ ଡେଇଁ ଧରିଛି ॥
ବୋଲାବୋଲି ସେ ହୋଇ ଏତେ ମାତ୍ର
ବହ୍ନି ସାକ୍ଷୀ କରାଇ ହେଲେ ମିତ୍ର ॥
ବୋଲୁ ଶତ୍ରୁକୁ ଦେଖାଅ ରାଘବ
ବୋଲୁଅଛି ସବିନୟେ ସୁଗ୍ରୀବ ॥
ବଧିବାକୁ ଇଚ୍ଛା ଯେବେ ବାଳିକି
ବଳ କଥ ଦୁନ୍ଦୁଭି ଅସ୍ଥି ଟେକି ॥
ବଚନ ରାମ ଶୁଣି ସେ ସନ୍ଧିଧିର
ବୃଦ୍ଧାଙ୍ଗୁଳିକ ବାମ ଚରଣର ॥
ବନ୍ୟସ୍ତ ଯେ କଲେ ଅସ୍ଥି ଶିରରେ
ବନରୁନ୍ଧେ କଣିକର ପରିରେ ॥
ବେନଗ ନୋଳିଲେ କଳି ମେ ଯେମନ୍ତ
ବନ୍ଧାସ୍ଥସେ ଫିଙ୍ଗି ଦେଲେ ତେମନ୍ତ ।
ବଢ଼େ ଶୁଭନ୍ତେ ଶବଦ ତାହାଁର
ବ୍ୟୋମେ ଦୃଷ୍ଟି କିଷ୍କିନ୍ଧ୍ୟାବାସୀଙ୍କର ॥
ଡଳକିଲେ କି ମହାନଗ ଉଡ଼ି
ବଜ୍ର ଘାଏ ବହୁତ ଦୂରେ ପଡ଼ି ॥

ବିକଳ୍ପତା ଉପୁଜିଲ ସୁଗ୍ରୀବେ
ବଡ଼ ଗୁରୁ ଏ ହୋଇଥିଲେ ପୂର୍ବେ ॥
ବସା ଆଦି ମାଂସ ଚର୍ମ ସମ୍ପୂର୍ଣ୍ଣ
ବିନାଶ ତ ପୂତିବଶେ ସେମାନ ॥
ବିବସ୍ତ୍ରାନ-କରଣେ ଶୁଷ୍କଭାବ
ବନ୍ଧେ ବାଳି ତେବେ ଏବେ ରାଘବ ॥
ବୋଲେ କଥା ଏକ ଅଛି ଆତୁର
ବକ୍ର ଆଣ୍ଠୁ ସଂଶାଳ ମାଂସୁଆ ॥
ବାଳି ଯାନ୍ତେ ଭରା ମଣ୍ଡୁ ବସୁଧା
ବଳ ଅଧେ ରଖିଛୁ ତାହିଁ ବେଧା ॥
ବନ୍ଧେ ତୁଳପାଶ ରନ୍ଧେ ସମାନେ
ବିଭାଗରେ ଗ୍ରନ୍ଥଦ୍ରବ୍ୟ ଯେମନେ ॥
ବିଦ୍ଧ ଭେଦ ନ ପାରନ୍ତି ଇନ୍ଦ୍ରାଦି
ବାଣକରେ ପାଶବ ଯେବେ ଛେଦ ॥
ବିରାଧାର ବୋଇଲେ କାନ୍ଦି କାନ୍ଦି
ବଳାମୂଳଶ୍ରେଣୀ ନେଇ ଦେଖାଇ ॥

———

## ଯଶୋଦା ବିଳାପ

( ସ୍ୱର୍ଗତ ଅଭିମନ୍ୟୁ ସାମନ୍ତସିଂହାର )

( ରାଗ—ଜୟନ୍ତ, କଳାକାଇଁଚ ବାଣୀ )

ଧୀରେ ଯେନ କାନନରେ କୃଷ୍ଣ ବିଳମ୍ବିତ
ବାତ୍ସଲ୍ୟ ମମତା ଯେନ ଭାଳୁଛନ୍ତ ମାତ ।
କଳାମାଣିକ ରେ !

ନିଧନ ସଞ୍ଚୋଳ ମୋର ଦରିଦ୍ର ପସର
ଅନ୍ଧର ଲଉଡ଼ି ବାବୁ ହୃଦରତ୍ନହାର ।
କଳାମାଣିକ ରେ !

ମୋ ଜୀବନ୍ୟାବନ ତୁହି ନୟନ ପ୍ରତିମା
ତୋତେ କି ପାସୋରି ହେବ ମୋର ସୁଖସୀମା ।
କଳାମାଣିକ ରେ !

ଉରୁଥାଉ ଅନ୍ଧାରକୁ ରଖିଯାଉ ଗୋରୁ
ଜନକଜନମୀ-ସୁଖ କାହିଁପାଇଁ ସାରୁ ।
କଳାମାଣିକ ରେ !

ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ
ହୃଦ-ତାପ-ବିନାଶନେ ତୁ ହରି-ଚନ୍ଦନ ।
କଳାମାଣିକ ରେ !

ଗୋଟିକା ଅଧାମ ସର ନ ରୁଚଇ ତୋତେ
ନାଚ ଲାଗି ମାଗୁଥାଉ ଲବଣୀ କେମନ୍ତେ ।
କଳାମାଣିକ ରେ !

ତୋତେ ମୁଁ ଧଇଲେ ଗୋଳ ହୋଇଯାଉ ଭୁହ
ତୋ ଦୁର୍ବଳ ଦେଖି କାହିଁ ପଶିବଇଁ ମୁହ ?
କଳାମାଣିକ ରେ ।

ଡାକମା ଲେଖନ୍ତ ବୋଲ ଡ଼ରୁଥାଇ ମନେ
ବାର ବାର ଦାଉଥାଇ ଯିବାପାଇ ବନେ ।
କଳାମାଣିକ ରେ ।

ନିଶାଚର ମାଡବାର ଶୁଣୁଣୁଛି ଖୁବ୍ ଭକ
ମୁଁ ଡକୁଣୀ ଛାଡ଼ଦେଲ ବନକୁ କାହିଁକ ?
କଳାମାଣିକ ରେ ।

ଝାଳ ବହୁଥିବ ଅଙ୍ଗୁ ଲଗି ଝାଙ୍କି ଖର
ଶ୍ରମ ପାଇ ତରୁତଳେ ବସୁଥିବୁ ପର ।
କଳାମାଣିକ ରେ ।

ନେଲୁ ନାହିଁ କାହିଁପାଇଁ ତୋ କଠାଉ ଛତା
ବନେ କଣ୍ଟା ଲଗି ହୋଏ ମୃଦୁ ପାଦଶନ୍ତା ।
କଳାମାଣିକ ରେ ।

କାନ ଡେରିଥାଇ ଏକା ତୋ ବେଣୁସ୍ୱନକୁ
ଆଜ କମ୍ପା ଶୁଣୁ ନାହିଁ ବୃଥାରେ ମନକୁ ।
କଳାମାଣିକ ରେ ।

ତୋଠାରୁ ଅଧିକ ବାଇ ତୋର ବଡ଼ଭାଇ
ବୋଧ କର ଚଳେ ନାହିଁ କାହିଁକ ରଖାଇ ।
କଳାମାଣିକ ରେ ।

ତୋ ମାଧୁରୀ ସୁରୂତୁରୀ ଦେଖି ସୁଖୀ ଆଖି
ଅନ୍ଧ କରି ଗଲୁ ବଳା କି ମମତା ରଖି ।
କଳାମାଣିକ ରେ ।

ସ୍ଥାଇକ ଅନାଇ ସ୍ଥନ୍ତ-ଫୁଲାଇ ତ୍ରିଭଙ୍ଗେ
ମୁରଲୀ ବଜାଉଥାଉ କି ଚତୁରୀ ରଙ୍ଗେ ।
କଳାମାଣିକ ରେ ।

କୋଳି ପାଇଁ ଅଳି କରି ଗଡ଼ୁ ତୁ ଧୂଳିରେ
ବେଶ ହୋଇଥାଉ ରସି କୁସୁମମାଳରେ ।
କଳାମାଣିକ ରେ ।

ନଟବର ପରିପାଟୀ ବେଶ ମନୋହର
ରଙ୍ଗିମା ଅଧରେ ହାସ କି ଜାତି ସୁନ୍ଦର ।
କଳାମାଣିକ ରେ ।

ନୟନ ହୃନ୍ଦର ମାନେ ଭ୍ରୂଲତା ମଥାକୁ
ଅଳକା ଆବୃତ ଶୋଭ୍ୟ ଲଲାଟପଟକୁ ।
କଳାମାଣିକ ରେ ।

ନାକେ କାବ୍ୟ ତାରା ମୋତି ବନ୍ଧୁଣୀ କି ଶୋଭା
ମୋ ଆଖି ଦେଖିବାପାଇଁ ନିରବଧି 'ଲୋଭା ।
କଳାମାଣିକ ରେ ।

———

# ସମର ସଜ୍ଜା

( ସ୍ୱର୍ଗତ ବ୍ରଜନାଥ ବଡ଼ଜେନା—ସମରତରଙ୍ଗରୁ )

( ରାଗ - ପାହାଡ଼ିଆ କେଦାର )

ସାର୍‌ଫଉଜ ହେଲେ ତୟାର          ମୁସଦ୍ଦ ମୁସା ହେଲେ ବାହାର
ପାଗା ସୁଆର କ ଜମାଦାର କ ସରଦାର ଯେ ।
ଯେ ଯାହା ମୁରାତବ ସମ୍ଭାର          ଦୌଲତ ଯେନ ହେଲେ ହାଜର
ମଞ୍ଜୁର କରି ହୁକୁମପାଇଁ ଯାନ୍ତି ସତ୍ୱର ଯେ ।
କେହି ଚଢ଼ିଛନ୍ତି ତାଜି ବାଜି ଉପର ଯେ
ରଙ୍ଗ ଆଙ୍ଗା ଅଙ୍ଗକୁ ଦିଶେ ସୁନ୍ଦର ଯେ ।
ଢାଲେକ ପୃଷ୍ଠ ବାମ ହାତରେ          ଭାଲ କଷିଛି ଦକ୍ଷିଣ କରେ
ଲାଲ ପଗଡ଼ି ଭଲ ମାନୁଛି ଶିରକୁ ତାର ଯେ । ୧ ।

କେ ଅଛି ତାଜି ବାଜିକ ଚଢ଼ି          ଧରି ନେଉଛି ଯୋଡ଼ି କ ଯୋଡ଼ି
ଇସାର୍ କଲେ ମହାଜିକ ଛୁଡ଼ି ଯିବ ସେ ଉଡ଼ି ଯେ ।
କେହୁ ତୁରୁକ ପିଠିରେ ବସି          ଢାଲ ବରଛି ଧରିଛି କଷି
କଣ୍ଠରେ ନଶ ଦେଇଛି ଖୋଷି, ଲମ୍ବିଛି ଦାଢ଼ି ଯେ ।
କେହୁ ସୁଆର ହୋଇ ଅଣଆପୂର୍ବ ଯେ ।
ଯେତେ ସମ୍ଭାଳିଲେ ସେ ନୋହେ ସ୍ଥକିତ ଯେ ।
ଫୁଃ ଫୁଃ ଶବଦ ମୁଖୁଁ ବାହାର          ବିଜୁଳି ପରି ଚରଣ ତାର
ହୁଅନ୍ତେ ଚୁଚୁକାର ପିଠିରେ ଚମକୁଛି କର ଯେ । ୨ ।

ଗୁଳି ଚଳାଇ ଖେଳୁଛି କେହି          କାହା ଠାଙ୍ଗଣ ଯାଉଛି ବହି
ଟେକ ଘୋଡ଼ା ଅଡ଼ ରହନ୍ତେ ଲେଡ଼ି, ଯୋଡ଼ି ଲଗାଇ ଯେ ।
କେଉଁଠି ଖେଳେ ଦୁଇ ଗୋଡ଼ରେ          ସୁଆର ଖସି ପଡ଼ିବା ଡରେ
କଣ୍ଠକୁ ଧରି ଭିଡ଼ି ଦୃଢ଼ରେ ସମ୍ଭାଳି ରହି ସେ ।

କାହା ଘୋଡ଼ା ଓଧାଡ଼ୀକ ଦେଖି ଆଗରେ ଯେ ।
ମତ୍ତେ ମିଶି ଯାଆନ୍ତେ ଅତି ବେଗରେ ଯେ ।
ବାଗ ହାତକୁ ଅଳପ ମୋଡ଼ ଆଣ୍ଠେ ସଳଖେ ଲଗାନ୍ତେ ବେଢ଼
ପବନ ପରି ଗଲା ସେ ଉଡ଼ି, ସେହି ଲଗରେ ହେ । ୩ ।
କାହା ହ୍ରେଷାର ସ୍ୱନେ ସଂସାର କର୍ଣ୍ଣ ଉଠୁଛି କେହୁ ବିସାର
ଫେରି ଛନ୍ଦେକେ କେ ବାଜୀ ଯାଉ ପଶି ଗଡରେ ଯେ ।
ଜଳଭଉଁରି ପଶି କେ ଖର . ଫେରି ପଳାଇ ଅତି ପ୍ରଖର
ବାମ ଦକ୍ଷିଣ କରଇ ଗତି ଦୁଷ୍ଟମଣ୍ଡଳରେ ସେ ।
କେହୁ ନାଚୁଆ ପରି ଦିଶେ ଗତିରେ ଯେ ।
କାହାର ଚରଣ ଥପ୍ନ ନୋହେ କ୍ଷିତିରେ ଯେ ।
କେ ବନ୍ଧେ ଆସେ ଗ୍ରୀବାକୁ ମୋଡ଼ି ତେଜିଁ ଯାଉଛି ଯୋଡ଼କୁ ଯୋଡ଼ି
କେ ସ୍ରୋତ ନଦୀ ନାବ ପରାଏ ଚଳ ଗତିରେ ଯେ । ୪ ।
ଅତ୍ୟନ୍ତ ମତ୍ତ ମାତଙ୍ଗକୁଳ ଚଳନ୍ତି ଧୀରେ ହୋଇ ପ୍ରବଳ
କି ସେ ପ୍ରବଳ ପର୍ବତମାଳ ମାଳସଂକୁଳ ଯେ ।
କିବା ଧରଣୀ-ତରୁଣୀ ନୀଳ— ଦୁକୂଳ ପିନ୍ଧି ଦିଶେ ମଞ୍ଜୁଳ
କି ସେ ଆକାଶୁ ଛାଡ଼ି ପଡ଼ିଛି ଜଳଦ-ଜାଳ ଯେ ।
ଏହି ସମୟେ ମଦଜଳ ବରଷେ ଯେ ।
ଅବଲୋକନେ ଆଭାସୁଛି ମାନସେ ଯେ ।
ପୁଣି କି ସିନ୍ଧୁ ମନ୍ଥିଲେ ଦେବେ ସିନ୍ଧୁରକୁଳ ଜନମି ଏବେ
ଅସଂଖ୍ୟ ହୋଇ ଆସୁଅଛନ୍ତି ଅତି ହରଷେ ଯେ । ୫ ।
କେଉଁ ହସ୍ତୀକ ମୋତି ଝାଲର ମାନଛି କାହା ମୁଣ୍ଡେ ସିନ୍ଦୂର
ଘଣ୍ଟି ଘାଗୁଡ଼ି କାହାର ଘୋର ହସ୍ତ ବିଚିତ୍ର ଯେ ।
ପ୍ରବଳ ତୁଙ୍ଗ କେଉଁ ମାତଙ୍ଗ ରଙ୍ଗ ସଜରେ ସାଜିଛି ଅଙ୍ଗ
ଶୂଳକ ତାର ଗଙ୍ଗା ତରଙ୍ଗ ଯୋଗିବା ମାତ୍ର ଯେ ।

କେଉଁ ଗଜରାଜର ବସନ୍ତ ସଜ ଯେ ।
ପଚ୍ଛୁ ଭୂଷଣେ ଅଛି ତୋଷ୍ର କା ତେଜ ଯେ ।
ତାହାଙ୍କ ମସ୍ତଗଣ୍ଡରୁ କରି ବାସ୍ଥର ହୁଏ ନିଷ୍ଟେ-ବଇରି-
କୁଳ-କମଳବନକୁ ଦଳି ଦେବ ଏ ଆଜ ଯେ । ୬ ।
ଏହି ସମୟେ ଗଣକ ଯାଇଁ ସାଏଚ ଧରି କହିଲେ ଏହି-
କ୍ଷଣି ପ୍ରୟାଣ କରିବେ ବୀରବର କେଶରୀ ହେ ।
ନେପାଳ ଦେଶ ଜାତ ସୁନ୍ଦର ଅମାରି କଷି କଲା ହାଜର
ତହିଁ ଆରୋହି ରାଜା ଚେମଣାବାବୁ ବାହାର ଯେ ।
ସ୍ବୃର ପାରୁଶେ ପାଗା ସୁଆରି ଘେରି ଯେ ।
ନାମଯାଦା ସିପାହୀମାନେ ବାହାରି ଯେ ।
ଲକବ'ଗ୍ରେପଦାରେ ଦ୍ରାକନ୍ତ କହି ନୋହେ ଏ ଯେଉଁ ସମ୍ପତ୍ତି
କି ଅବା ଛୁଟିଛି ପଡ଼ିଲା ସୁରନଗରେ ଶିଶ୍ରୀ ହେ । ୭ ।
ବରଷାକାଳ ନଦୀ ପରାଇ ଦାଟେ ଅବାଟେ ଗଲେ ସେ ବହି
ଦଶ କୋଶରେ ରହିଲା ନାହିଁ ତରୁ ତୃଣ ହିଁ ଯେ ।
ଚଳନ୍ତେ ତାଙ୍କ ଚରଣ ଘାତେ ମହୀ ସମାନ ହେଲେ ପର୍ବତେ
ପିଇଯିବାରେ ଶୁଖିଲେ କେତେ ପୋଖରୀ ନଈ ଯେ ।
ପଥର ହିଁ ରହିଲା ନାହିଁ ପଥରେ ଯେ ।
କାହା ଧୂଳି ରହିବ ଅବା ଏଥିରେ ଯେ ।
ଧୂମାନ୍ତ କରି ମୂଳକସାକ ଧନ କାଞ୍ଚନ ଲୁଟି ଅନେକ
ଯାଇଁ ପଡ଼ିଲେ ଷାଠିଏ ବାଟି (୧) ବଳଭିତରେ ଯେ । ୮ ।

---

(୧) ଢେଙ୍କାନାଳରେ ନିଜ ଗଡ଼ ଭିତରେ ଥିବା ପଶ୍ଚିମ ଦିଗରେ ଜମି (କୁଣ୍ଟୁଣିଆ ପର୍ବତ ତଳରୁ ଡଙ୍କୁଣିଆ ସାହି ପର୍ଯ୍ୟନ୍ତ ସମସ୍ତ ଜମି) ଷାଠିଏ ବାଟି ନାମରେ ଖ୍ୟାତ ।

ସ୍ୱଜନମଣି ପୂର୍ବନ୍ତୁ ଜାଣି          ଅଗାଧ ପାଣି ଜଳ ନିର୍ମାଣି

ପାଷାଣ କାନ୍ଥି ସଜାଡ଼ି ପୁଣି ମନ୍ତ୍ରବ୍ଧ କରି ଯେ ।

ଗୁଣ୍ଡ ବାଜିବା ସ୍ଥାନକୁ ହେଜ          ଘାଟି କାଙ୍ଗୁଲ ଅନନ୍ତି ସାଜ

ଚଣ୍ଡିପ୍ରସାଦ ଗୁଣ୍ଡକୁ ଖଞ୍ଜି ଛନ୍ତି ବରୁଣ ଯେ ।

କାହିଁ ମୂଲକ ମଇଦାନ ତୋପକୁ ଯେ ।

ସଜ କରିଅଛନ୍ତି କୋଣେ ଧାପକୁ ଯେ ।

ଅଳପ ପାତ୍ର କେଉଁ ମୁଣ୍ଡକୁ          ରୁପିଅଛନ୍ତି ଖାଲ ମୁଣ୍ଡକୁ

ମଉଡ଼ା ଫେକିଛନ୍ତି କାହାର ଉଇମାପକୁ ଯେ । ୯ ।

କେଉଁ ମୁ ରୁତୁଭାଡ଼ରେ ନଳ          ସଜାଡ଼ିଛନ୍ତି ଧାଡ଼କ ଧାଡ଼ି

ରୁପି ଅଛନ୍ତି ଲଚ୍ଛିଲେ ଉଡ଼ିପିବ କଉଡ଼ି ଯେ ।

କାହିଁରେ ସିପା ଲଗାଇ ଭିଡ଼-          ଛନ୍ତି ଜଳାଲ ମୋଡ଼କ ଯୋଡ଼ି

ଅର୍ଦ୍ଧ କୋଣରେ ବାନ୍ଧିଲେ ଝିଉପଡ଼ିବ ଢୋଳ୍ପୀ ଯେ ।

ରୁପା କାହିଁରେ ପେଟକଟା କମାଣ ଯେ ।

ତାର ଫିଟିଲେ ଅଛି ଏହି ପ୍ରମାଣ ଯେ ।

କୋଣେ ସରକ କ ତରୁ ଦାରୁ          କଅବା ପଥର କ ଅବା ମେରୁ

କ କଷ୍ଟ ନର ବାଜନକର ପୂର୍ବ ଏ ମାଣ ଯେ ।୧୦।

କାହିଁରେ ଧାଉଡ଼ିଆ ପଦ୍ମଣ୍ଡ          ଜଳା ଭିତରେ ପକାଇ କାଣ୍ଡ

ବନ୍ଧିବା ପାଇଁ ହୋଇଛନ୍ତି ମୃଣ୍ଡଲୁଆଣ ଭଣ୍ଡି ଯେ ।

କାହିଁ ଉଙ୍କୁଣମାପକୁ ଆସି          କେତେବେଳରେ ଯିବେ ବା ପଶି

ବୋଲି ଉଙ୍କୁଣ ଅନନ୍ତ କଷି ଯିହିବେ ଗଣ୍ଡି ଯେ ।

ଆଣ୍ଠି କଣ୍ଠାରେ ମାରି ବନ୍ଧଳପଟ୍ଟା ଯେ ।

ଢଗବାରଣ ଘାଡ଼ ଗୋଟାକୁ ଗୋଟା ଯେ ।

କେଉଁ ବର୍ତ୍ତିବା ଗଡ଼ ଦୁଆର          ଶଙ୍କା ନୋହିବ ଅବା କାହାର

ଲଙ୍କାରେ ମାସ ଥିଲା ସଜାଡ଼ି ଦଶମୁକୁଟା ଯେ । ୧୧ ।

ଏହି ସମୟେ ଜଣାଏ ଚର, ହେ ମହାରାଜା ପ୍ରତାପୀ ବର,
ତେମଣାବାକୁ ପଡ଼ିଲେ ତାର ସୈନ୍ୟ ଅପାର ଯେ ।
ମହିମା ବସୁ ନାହିଁ ଧରଣୀ ରହୁ ତ ନାହିଁ ପଥର ପାଣି
ଦେଖିଆସୁଛି ମୁଁ ଏହିକ୍ଷଣି ଗଡ଼ ପାଶର ହେ ।
ପୁଣି ପୁଣି କହନ୍ତି ଅନେକ ଲୋକ ଯେ ।
ମହାରାଜା ବୁଡ଼ିଲ ନଷ୍ଟେ ମୂଲକ ଯେ ।
କେ ବୋଇଲେ ନଷ୍ଟେ ଗଲାଁ ଧରା କେ ବୋଇଲେ ରାଜା ଭେଟିବେ ପରା
କେ ବୋଇଲେ କନ୍ତୁ ନୋହିବ ମରା (୧) ପଡ଼ିବେ ଲୋକ ଯେ । ୧୨ ।
ଏମନ୍ତ ଶୁଣି ସେ ନୃପମଣି ଦୋପର ପରେ ଚଢ଼ି ତକ୍ଷଣି
ନ ବଳଣ ଗଜ ତୁରଙ୍ଗ ପୁଣି କେ ପାରେ ଗଣି ହେ ।
ଦେଖିଲେ ଲୋକେ ହୋଇ କାତର କହନ୍ତି ଧୋଟି ଆସେ ସାଗର
ଲୋକ ଚଳନ୍ତେ ବୋଲନ୍ତି ଦେଖ ତରଙ୍ଗପାଣି ହେ ।
ଗଜମାନଙ୍କୁ ବୋଲନ୍ତି ଏ ମଗର ଯେ ।
ଓଟେ ନୁହନ୍ତି ଭାସୁଛନ୍ତି କୁମ୍ଭୀର ଯେ ।
ଯୋଡ଼ବା ଅଶ୍ୱ ଗତକ ଚଢ଼ି ବୋଲନ୍ତି ମୀନ ଯାଆନ୍ତି ତେଇଁ
ଫେଣ ପରାଏ ମଣନ୍ତି ତହିଁ ଶ୍ୱେତଚମର ଯେ ।୧୩।
ଉଡ଼ୁଛନ୍ତି ଯା'ଧ୍ୱଜା ଦେଖି ପୁଣି ବୋଲନ୍ତି ମଣିମା ଦେଖ
ଏ କେତେ କେତେ ଜହଡ଼ିମାନ ଆସୁଛି ଉଠି ଯେ ।
ଗଡ଼ି ଶଗଡ଼ ଚଳବା ଚଢ଼ି, ସୋଲପ ପରା ମଣନ୍ତି ତହିଁ,
ତମ୍ବୁମାନଙ୍କୁ ବୋଲନ୍ତି ଦେଖ ବୋଇତ ଏଟି ହେ ।
ଶୁଣ୍ଡମାନଙ୍କୁ ସର୍ପ ପରାଏ ମଣି ଯେ ।
ନଳମାନଙ୍କୁ କ୍ଷୁଦ୍ର ମୀନରେ ଗଣି ହେ ।
କେ ବୋଇଲେ ଆହେ ହେଲ କ ବାଇ ସାକ୍ଷାତେ ସିନ୍ଧୁ ଗର୍ଜି ଆସଇ
ମିଶି ଅଛନ୍ତି କେତେ ନୃପତି ସଙ୍ଗତ ପୁଣି ହେ ।୧୪।

---

( ୧ ) ପାଠାନ୍ତର ' ମାରା ' ( ସୂର୍ଯ୍ୟନାରାୟଣ ସଂସ୍କରଣ )

ମହା ପ୍ରବଳ ଫଉଜ ଗୃହେଁ          କାହା ଧଇର୍ଯ୍ୟ ରହିଲା ନାହିଁ
କେହି ବସିଲେ ବିଷାଦ ହୋଇ ମହୀକ ଗୃହେଁ ହେ ।
କେ ଅବା ତହିଁ ମନେ ବିଚାରେ          ଅବଶ୍ୟେହିଁ ତ ମରିବା ଥରେ
କେବଳ ହସ୍ତ ପିଟିବା କାଳ ହେବ କି ନାହିଁ ହେ ।
କେହୁ ବୋଲଇ ମରିବାର ପ୍ରମାଣ ଯେ ।
ଛାଡ଼ିଦେଲେ ବାଜିବ ମୋର ଢଙ୍କୁଣ ଯେ ।

କେ ବୋଲେ ଆମ୍ଭ କାହ୍ନ କି ହେବ          ଯାହା କରିବେ ସେ ବଳଦେବ
ମନେ ହେଉନ୍ତି ଅଖଣ୍ଡେ ଯିବ ପରା ପରାଣ ଯେ । ୧୫ ।
ଏମନ୍ତ ଶୁଣି ସେ ନୃପବର          ବୋଲନ୍ତି ଏ ଯେ ଘୋର ସାଗର
ଘୋଟି ଆସୁଛି କଷ୍ଟ ବିଚାର ନାହିଁ ମନର ହେ ।
ନିଶରେ କର ପକାଇ କରି          ବୋଲନ୍ତି ହେବ ମନ୍ଦରଗିରି
ମନ୍ଥି ଦେବ କି ଅଛ ବିଚାର ମନେ ତୁମର ହେ ।
ଏହି ସିନ୍ଧୁ ମନ୍ଥନ କରିବା ଯେବେ ହେ ।
କେତେ ଧନ ରତନ ମିଳିବ ତେବେ ହେ ।

କେବଳ ତୁମ୍ଭେ ସୁର ଅସୁର          ପରାପ୍ତେ ମୋତେ ଆଶ୍ୱାସି ଧର
କାଳ କାଳକୁ କୀରତି ରହିଯିବ ଏ ଭବେ ହେ । ୧୬ ।
ଏମନ୍ତ ବୋଲି ଉଠନ୍ତେ ଫୁଲି          ଫାଟିଗଲା କି ଶ୍ରୀଅଙ୍ଗ ଚୋଳି
ବୋଇଲେ କାଳି ବୁଝିବ ଚାଳଚଳଣି ସବୁ ଯେ ।

ପ୍ରାଣକୁ ଆଶା ରଖୁଛି ଯେହ୍ନ          କହନ୍ତି ଏତେବେଳେଁ ସେ ଯାଉଁ
ମରିବା ଲୋକ ମୋ ପାଖେ ଥାଉ ତେମଣା ବାବୁ ଯେ ।
ତୁଚ୍ଛା ଛନ୍ଦାଉ ଥାଅ ନିଶକୁ ମୋଡ଼ ଯେ ।
କାଳ ଅଛି ଏତେକବେଳକୁ ପଢ଼ ଯେ ।
କେ ପାଡ଼ କେହୁ ମରଦ ଚହ୍ଲା          ଏହି ଠାବରେ ପଡ଼ିବ ସିନା
ଛାଡ଼ଣ ଦେବା ଗୋବର ଘର ପାଠ ଉପାଡ଼ ଯେ । ୧୭ ।

ଶୁଣି ଏମନ୍ତ ବଚନ ତହିଁ . ନପେଶ ନାଃଣଙ୍କେ କର ପକାଇ
ସହି ନ ପାରି ଟବୋଇଲେ କେହି ଚହ୍ନିବେ ନାହିଁ ଯେ ।
ଖାମିନ୍ଦ ବୋଲି ବୋଇଲେ ଏହା ନୋହିଲେ ନକ ଯାଆନ୍ତା ସୁଦ୍ଧା
କେବଳ ଗଣ୍ଡି ଦେଖିବ ମୁଣ୍ଡ ଦେଖିବ ନାହିଁ ଯେ ।
ଗୁଣ୍ଡ ଦେଖି ଏ ପାଡ଼ମାନଙ୍କୁ ଥରେ ହେ ।
ଗଡ଼ ଭିତରେ କମ୍ପା ଲୁଚିଛ ଡରେ ହେ ।
ଗର୍ଦ୍ଧନା ମାରି ପଛେ ଗୋସାଇଁ ଏ କଥା କେହୁ ପାରିବ ସହି
ରଙ୍ଗବଦନ ଅଙ୍ଗ ତାଙ୍କର ନୋଧରେ ଥରେ ହେ । ୧୮ ।

ଶୁଣି ସାନନ୍ଦ ନର ଈଶ୍ୱର ବୋଇଲେ ଏବେ ହେଲା ଟଗୋଚର
ଏହା ଶୁଣିବା ପାଇଁ ପଡ଼ିଲା ସିନା କେବଳ ହେ ।
ପଇସା ଘରେ ନାହିଁ ଆମ୍ଭର . ସେହି ତ ଦଶବଂଶ ହଜାର
ନ ନେବେ ପୁଣି ଯୁଝିବା କଥା ଟହାଇଲା ମୂଳ ହେ ।
ଆଜ୍ଞା କରି ବଜପ୍ୟେ ଶ୍ରୀପାଳଙ୍କିରେ ଯେ
ଯାଇ ପ୍ରବେଶ ଗଡ଼ ମୁହୁଁଦ୍ୱାରେ ଯେ ।
ପୂର୍ବରୁ ଜଗିଥିଲେ ତ ଲୋକ ଯେଉଁ ଠାବକୁ ଯେଉଁ ପାଏକ
ଖଞ୍ଜି ରଖିଲେ ଗଡ଼ ନାୟକମାନଙ୍କ ଠାରେ ଯେ । ୧୯ ।

କାହାକୁ ଶୁହିଁ ବୋଲନ୍ତି ବାପା ମୁଖ ଶୁଖାଇ ଦେଉଛୁ କମ୍ପା
ଦେଖ ସମ୍ମୁଖେ ଘୋଡ଼ା ଶିରୋପା ମୁକୁଟା ଲୋଳ ରେ ।
କେତେବେଳକୁ ମରଦ ମଣି ଏହି ଠାବରେ ବୁଝିବା ଠାଣି
ଦେଖ ବହିଲ୍ଲି ଟକେତେ କମାଣ ଜଜାଲ ନଳରେ ।
ଟଗୋଳ୍ନ ବଢ଼ାଇ ସେ ଜ ଡେଇଁବେ ଜଳରେ ।
ଅସୁର ର ନୁହନ୍ତି ଦେବାକୁ ଟିଳରେ ।
ଦଢ଼ିଏ ମାନ ଅନାଅ କନା ପୋଡ଼ିବା ଏକାବେଳକେ ସିନା
ଭଲ କେମନ୍ତ କାଟିବା ନାହିଁ ଆମ୍ଭର ଗୁଳ ଯେ । ୨୦ ।

ଆଉ ମୃଗୁରୁ କଣ୍ଟକ ଯାଇଁ କହନ୍ତ କଣ୍ଟ ବଗୁର ନାହିଁ
ପିଠି ଉପରେ ଅଛି ସେ ମୂହିଁ ଥାଅ ନିଷ୍ଟିନ୍ତ ଯେ ।
ବାନ୍ଧି ସେ ଫଳେ ଫଣ୍ଡିକ ବାନା ଯେତେ ହୋଇଲେ ଲଙ୍କା ସିନା
କଣ୍ଡକା ରଖି କ କରବ ମୀ ମୂଳ ହେମନ୍ତ ହେ ।
ବରଗିଏ କ ଦେଣା ପାଇଲେ ଏବେ ହେ ।
ଜଳ କାନ୍ନରେ ଆମି ଉଡ଼ ପଡ଼ିବେ ହେ ।
କଅବା ତାଙ୍କ ଅଙ୍ଗ ଦଥର କାଟିବ ନାହିଁ ଆମ୍ଭର ଖର
କେ ବଳ କେବ୍ଦ ଶ୍ୟାମଳ*ଚନ୍ଦ୍ରାପିବ ଦଇବେ ହେ । ୨୧ ।
କାହା ମୃ ଗୁରୁ କଣ୍ଟକ ଯାଇଁ ପିଠିରେ ଠୁକ ବୋଲନ୍ତି ଭାଇ
ଏହ ମଳଖେ ଥୁବୁଟି ଗୁହିଁ ଅଇଲେ ବାହ୍ନ ସେ ।
ହାତେ ତୋ ଅଛ୍ନି ନେଇଁ ଜମ୍ବୁରା ଫୋଡ଼ିବୁ ଏକା ହୋଇଣ ଧୀରା
ହାଣ୍ଡି ହୋଇଲେ ଲେଉଟି ତେଣେ ପଡ଼ିବ ଯାଇଁ ଯେ ।
ମନ୍ଦ ହାସେ କହନ୍ତ ପୁଣି କାହାକୁ ଯେ ।
ସବୁବେଳେ ତ ଠୁକୁଅଛ ବାହାକୁ ଯେ ।
ଲୋକଙ୍କୁ ଗୁହିଁ ଗୁଡ ଫୁଲାଇ କହୁ ତ ଥାଉ ନଶ ହଲାଇ
ଦେଖିବା ଦେଖି କେତେ ଟାଣ ତୋ ମନ ଲୁହାକୁ ଯେ ।୨୨।
ଏମନ୍ତେ କଲେ ଖଣ୍ଡରଞ୍ଜନା ସୁଧାକରଢ ସିନା ସେ ଭାଷା
ମରମକଣ୍ଟା ଯେଉଁ ପ୍ରଶଂସା, ଜୀବନ ଆଶା ଯେ ।
ଗୁଣ୍ଡ ସକଳେ କଲେ ହେମନ୍ତ ଜଗି ରହିଲେ ଯେତୁ ଯେମନ୍ତ
ବଗୁର କଲେ ନୋହିବା ଭାଇ ଏ ଲୋକହସା ରେ ।
ସରଦାର ସନ୍ନିଁରେ ଅଟେ ନୃପତି ଯେ ।
ମନ କଅଁଳ ହେଲା ପଥରମତି ଯେ ।

---

* ପାଠାନ୍ତର ଶୃଗାଳ (ସୂର୍ଯ୍ୟନାରାୟଣ ସଂସ୍କରଣ)

କି ଧନ ଗଣ୍ଠି ଆଠପହର  ବାନ୍ଧି ରହିଲେ ଲୋକ କମର
ମୀନକୁ ବକ ଟାକିଲା ପରି ଜଗିଥାଆନ୍ତି ସେ । ୨୩ ।
ଯେହୁ ମାଗିଲା ଯେଉଁ ଆହାର  ଆଜ୍ଞା ପ୍ରମାଣେ ଦେଲେ ସତ୍ୱର
ପାଏକ ଲୋକ ପାଇଲେ ପୁଣି ଯାହିଁକି ଚଣ୍ଡ ସେ ।
ଡାଲି କଦଳୀ ବଡ଼ ଆମ୍ବର  ଘିଅ ନବାତ ଦଧି ଶାକର
ଯହିଁକି ଯାହା ମନ ବଳିଲା ନେଲା ସେ ଲୋଡ଼ି ହେ ।
ଅନୁରୂପରେ ଦେଲେ ଗୁଳି ବାରୁଦ ସେ ।
ଗୃହପାଖେ ନାଗରା ଟମକ ନାଦ ହେ ।
ଆର ଗ୍ରନ୍ଥରେ ବର୍ଣ୍ଣିବା ପୁଣି  ସେମନ୍ତ ହେଲା ଯୁଦ୍ଧକାହାଣୀ
ବ୍ରଜନାଥର ଭରସା କୃଷ୍ଣ-କମଳପାଦ ହେ । ୨୪ ।

---

# ଜଗତେ କେବଳ

( ସ୍ୱର୍ଗତ କବିସୂର୍ଯ୍ୟ ବଳଦେବ ରଥ )

( ରାଗ—ଆଷାଢ଼ ଶୁକ୍ଳ )

ଜଗତେ କେବଳ
ଜନେ ହସିବେ ଏଥି ତହୁଁ ଫଳ ।

ଜଟିଳ କର ସ୍କନ୍ଧ ରୋମରାଜ
ଶିଖରୀ ଦର୍ପରେ ମରୁ ଗରଜ ।
କୁଟିଳ କର ଭ୍ରୂକୁଟିକୁ ପୁହୁଁ
ସରମା କର୍ଣ୍ଣୀରବ ହେବ କାହୁଁ ? । ୧ ।

ଅଲକତଦ୍ରବ ନୟନେ ବୋଳ
ରସାଳ-ପଲ୍ଲବ-ଶାଖାରେ ଖେଳ ।
ଜବଳ କରୁ ତା କଳ କଳାପ
କାକ କି କରିବ ପଞ୍ଚମାଳାପ ? । ୨ ।

ବରଞ୍ଚ ବରଷେ ଦେଇ ମାନସ
ବରଜ ବରଷେ ଅମେଧ୍ୟ ଗ୍ରାସ ।
ଦେହେ ମନ୍ଦାକିନୀ ରଜ ଲଗାଇ
ଗ୍ରାମଶୂକର କି ହୋଇବ ଗାଈ ? । ୩ ।

ରଞ୍ଜୁ ଚରଣେ ଲଗାଇ ହିଙ୍ଗୁଳ
ନିଜ ତୁଣ୍ଡେ ମଣ୍ଡି ଖଣ୍ଡ ମୃଣାଳ ।
ଗୁଳୁଁ ପୂର୍ବ ଅଙ୍ଗ ବୁଲାଇ ବକ
ତେବେ ସେ ମରାଳୀ ବୋଲାଇବ କି ? । ୪ ।

ରଞ୍ଜି ନାୟକ ରଙ୍ଗେ ସ୍ନେହଦ୍ୱାର
ଖଞ୍ଜିଲେ ହେଲେ ଗୃହୁକ ସବାର ।
ଖିଆଇଲେ ହେଲେ ନାନା ମସଲା
ତୁରଙ୍ଗ ହୁଏ କି ରାସଭଫିଲା । ୫ ।
ବଦରିକା ବନେ ନିତ୍ୟ ନିବାସ
କରି ଆଚରି ବ୍ରତ ଉପବାସ ।
ପ୍ରଯତ୍ନ କଲେହେଁ ନାନା ପ୍ରକାର
ଖଦ୍ୟୋତ ହୋଇବ କି ପ୍ରଭାକର ? । ୬ ।
ଯାହାକୁ ଯାହା କରିଛି ଦଇବ
ତାହୁଁ କି ସେ ଅନ୍ୟଥା ହୋଇବ ।
ଘେନଲେ ହେଲେ ଯତ୍ନେ କୋଟିପୁତ୍ର
ପିତୃକୃତି କେହ୍ନି ହେବ ପୁତ୍ର । ୭ ।
ଦେବ ଉପବନେ ହୋଇ ଜନମ
ସ୍ୱଭାବ-ମଦରୁ ଜବ୍ୟଲତା ।
ତୁଳସୀ ତୁଳେ ହେଲେ ମିଶାମିଶି
ତାହାକୁ ଯେବେ ବୋଲିବା ତୁଳସୀ । ୮ ।
ସମଜଇ ନାହିଁ ସ୍ୱଜାତି ଭାଷା
କହିଲେ ହେଁ ହୁଅଇ ଲୋକହସା ।
ଜଡ଼ ମୁଁ ବୋଲି ନ ଜାଣି ନିର୍ବେଦ
ତଡ଼ଦର୍ଶୀ ତୁଳେ କଲେ ବିବାଦ । ୯ ।
ଦେହରେ ବାଜଲେ ପର ନିଶ୍ୱାସ
ସମ୍ଭାଳିବାକୁ ନ ଥାଇ ବିଶ୍ୱାସ ।
ନିର୍ଲଜ୍ଜ ଅଭିମାନେ ତେଜି ଗ୍ରନ୍ଥ
ହାଣ୍ଡି ଲଢ଼ାଇକି ବାନ୍ଧିଲେ କାନ୍ତ । ୧୦ ।

କରମରେ ତ ହୋଇଅଛି ଲେଖା
କରମର୍ଦ୍ଦକ ଯୋଗ୍ୟ ତୋର ଶିଖା ।
ଧରମଉଜ୍ଜଳଯୋଗ୍ୟ ଚମ୍ପକକୁ
ଭରମରେ ବୃଥା ପଡ଼ ଯା ଝାଲୁ । ୧୧ ।
ଶ୍ରୁତଚନ୍ଦ୍ରୋଦୟା ମଶାଲ ପାଖେ
ବହ୍ନି ଜାଳବ ଯେବେ ଦଶା ମୂଖେ ।
ଧାତା ତ କରିନାହିଁ ତା ନକାଶ
କି ରୂପେ ହେବ ସେପରି ପ୍ରକାଶ । ୧୨ ।

( ୪୬ )

# ଦରବାର

( ସ୍ୱର୍ଗତ କବିବର ରାଧାନାଥ )

ଉତ୍କଳର ପୂର୍ବକୀର୍ତ୍ତି-ସ୍ମୃତି ପୂତ
ବାରବାଟୀ ଆଜ ସାଜେ ସଜ୍ଜୀଭୂତ । ୧ ।
ଐତିହାସିକ ଏ ଦୁର୍ଗ ବାରବାଟୀ
ବୀରରକ୍ତ ପିଣ୍ଡେ ଗଢ଼ା ଯାର ମାଟି । ୨ ।
ବାରବାଟୀ ସହିଁ ମନ ସ୍ମୃତି-ପୋତେ
ବହିଯାଏ ପ୍ରତି ଲୋମେ କାଳସ୍ରୋତେ । ୩ ।
କାଳେ କାଳେ କେତେ ଦେଖି ସେ ଆସିଲା
ନଶ୍ୱର ନରର ଗାଧମାର ଲୀଳା । ୪ ।
ପୁଣି ନୂଆ ଲୀଳା ଲାଗିଛି ଏଠାରେ,
ପୁଣି ମତ୍ତ ନରେ ନଶ୍ୱର ବ୍ୟାପାରେ । ୫ ।
ପୁଣି ଦେଖ ଆସି ଗାଧମାର ଘଟା,
ଲୁଚି ବସି କାଳ କରେ ଯାକୁ ଥଟା । ୬ ।
ଦେଖିବାକୁ ଏହି ରାଜସ ଉତ୍ସବ
ରୁଣ୍ଡ ଦୁର୍ଗାଙ୍ଗଣେ ଅସଂଖ୍ୟ ମାନବ । ୭ ।
କାଞ୍ଚି-ଅଭିଯାନେ ଯେ ଦୁର୍ଗ-ପ୍ରାଚୀର
ବାଦ୍ୟନାଦେ ଦେଇଥିଲା ପ୍ରତିଧ୍ୱନି । ୮ ।
ଜରାଜୀର୍ଣ୍ଣ କେଉଁଣେ ଦେଖଇ ସେ ଆଜ
ନବ୍ୟ ଉତ୍କଳର ଏ ସଭ୍ୟ ସମାଜ । ୯ ।
ପୂର୍ବ ନରପତି ପ୍ରେତ-ଆତ୍ମାମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ । ୧୦ ।

ଦେଖନ୍ତ ସଖେଦେ ତାଙ୍କର ଦୁର୍ଜୟ
ଉତ୍କଳର ଏହି ଦଶା ବିପର୍ଯ୍ୟୟ । ୧୧ ।
ଏହି ଶିଳାବନ୍ଧ ଯାହାଙ୍କ କୀରତ୍ତି,
ପୁଣ୍ୟଶ୍ଳୋକ ମରକତ ମହୀପତି । ୧୨ ।
ଦେଖି ନାହାନ୍ତ କି ମନେ ବହି ଲଜ
କି ଥିଲା ଏ ରାଜ୍ୟ, କି ହୋଇଛି ଆଜ । ୧୩ ।
ଇନ୍ଦ୍ରନୀଳଗିର ଚୋଳ ନଭସ୍ତଳେ
ଏ ଦୃଶ୍ୟ ଦେଖନ୍ତ ଶାଶ୍ୱତ ଅଚଳେ । ୧୪ ।
ମଞ୍ଜୁ-ରମା କାଞ୍ଚଜେମା ସ୍ନାନେ ପୂତା
କାଞ୍ଚଜେମା ବେଣୀପ୍ରଭ-ବେଣୀଯୁତା । ୧୫ ।
ଦ୍ରୁଷଦ୍‌ବକ୍ଷାରୂପେ ଜର୍ଜର ମୁଖରା,
ସୈକତଶଯ୍ୟାରୂପେ ନୀଳନୀଳାମ୍ବରା । ୧୬ ।
ଠାବେ ଠାବେ-ଦ୍ୱୀପ-ଶୈଳ-ଦ୍ୱୀପଦଣ୍ଡି—
ପୁଞ୍ଜେ ବକ୍ଷ ଯାର ହୋଇଅଛି ମଣ୍ଡି । ୧୭ ।
ପ୍ରବାହ-ବିହାରୀ ଅରଣ୍ୟ ଦନ୍ତୁର
ମଦେ ଚନ୍ଦ୍ରକିତ ଯାର ନୀଳ ନୀର । ୧୮ ।
ଅଗ୍ରେ ସେହି ନଦୀ ବହୁଅଛି ରଙ୍ଗେ
ଏ ରଙ୍ଗ ନିରେଖି ତରଙ୍ଗ ଭ୍ରୂଭଙ୍ଗେ । ୧୯ ।
ଏକ ପରେ ଏକ ରାଜା, ମହାରାଜା,
ଆସନ୍ତ ବଜାଇ ନାନା ରଙ୍ଗେ ବାଜା । ୨୦ ।
ଉଡ଼ଇ ପତାକା ଝଟକଇ ହାସ ।
ପାଏକ କୁହାଟେ ମନେ ଲାଗେ ତ୍ରାସ । ୨୧ ।
ଆସ୍କନ୍ଦ ଆସନ୍ତ ଅଶ୍ୱ ମାଳ ମାଳ,
ଛିନ୍ନମୁଣ୍ଡ କେତେ ଆସନ୍ତ ଶୃଗାଳ । ୨୨ ।

ଯାନ ବାହନରେ ଲଗିଅଛି ଧୁମ,
ପଡ଼ୁଅଛି ତୋପ ଗୁଡ଼ୁମ ଗୁଡ଼ୁମ । ୨୩ ।
ଚନ୍ଦ୍ରାତପ ତଳେ ବସାଜଇ ମଞ୍ଚ,
ମହାର୍ଘ-ବସନ ଭୂଷଣେ ସୁସଞ୍ଚ । ୨୪ ।
ସ୍ତମ୍ଭାବଳୀ ପତ୍ରେ ହୋଇଛି ମଣ୍ଡନ,
ଅଗ୍ରେ ଧାଡ଼ି ଧାଡ଼ି ସଜେ ବେଶାସନ । ୨୫ ।
ମାରବେ ଗରବେ ପ୍ରହରୀମାଳକା,
ଦେଖାନ୍ତି ଭାସ୍ୱର-ଅସ୍ତ୍ର-ବର୍ଣ୍ଣିକା । ୨୬ ।
ଉପାଧି ଜଡ଼ିତେ ଉପାଧି-ଜଡ଼ିତ,
ଉପାଧିରେ ଆଜ କରିବେ ଜଡ଼ିତ । ୨୭ ।
ପଦଟିଏ ଦେବେ କର୍ଣ୍ଣ ରସାୟନ,
ପଦ ଅନୁରୂପେ ବସନ ଭୂଷଣ । ୨୮ ।
ଜଙ୍ଗ ଭକ୍ଷ୍ୟ କ୍ଷୟଶୀଳ ତଲବାର,
ପୋଷାକ ଚୂଟିଆ ମୂଷାର ଆହାର । ୨୯ ।
ମୋତିମାଳ ଅସ୍ଥି-ବିକାର କେବଳ,
ଜଳକା ନୟନେ ଦିଶେ ଯା ଉଜ୍ଜ୍ୱଳ । ୩୦ ।
ଶିର-ପେଞ୍ଚ ଯାହା କଣ୍ଟିହାନ ଅନ୍ତେ,
ତରଳେ ଜରକା ପ୍ରାୟେ କାଳଦନ୍ତେ । ୩୧ ।
ପଦାର୍ଥ-ସମ୍ପର୍କ-ଶୂନ୍ୟ ନୂଆ ପଦ,
ଆଙ୍ଗେ ମିଳିବ ଏ ନୂଆ ପରିଚ୍ଛଦ । ୩୨ ।
ଏହି ସ୍ଥିର, ଏହି ଅକଞ୍ଚିତକର,
ସମ୍ମାନ ସକାଶେ ଏତେ ବ୍ୟସ୍ତ ନର । ୩୩ ।
ହା ଧିକ ! ଏ ଭୁକସାର ପଦ ପାଇଁ,
ଦେଉଛନ୍ତି ଲୋକେ ସମ୍ପଦ ଉଡ଼ାଇ । ୩୪ ।

ଏଥିପାଇଁ ଲୋକେ ଦଅନ୍ତି କି ଭଳି,
ମନୁଷ୍ୟବାହନ ସେବାପୀଠେ ବଳି । ୩୫ ।
ଉପାଧି-ଲାଳସାରୂପୀ ମହାବ୍ୟାଧି,
ହୋଇଛି ସାତ୍ତ୍ୱିକ ଧରମର ବାଧା । ୩୬ ।
ଅସାର ଝଟକ ହୋଇଅଛି ସାର,
ଭଣ୍ଡଚାର ବଢ଼ି ଯାଉଛି ପ୍ରସାର । ୩୭ ।
କରୁଛନ୍ତି ଲୋକେ ଉପାଧି ଆଶାରେ,
ମନୁଷ୍ୟର ପୂଜା ଷୋଡ଼ଶୋପଚାରେ । ୩୮ ।
ମନୁଷ୍ୟ ଟାଣିବା ପାଇଁ ସହି କଷ୍ଟ,
ମନୁଷ୍ୟ-ପଣରୁ ହେଉଛନ୍ତି ଭ୍ରଷ୍ଟ । ୩୯ ।
ପଦ ପାଇଁ ଲୋକେ ହୋଇ ଲାଳାୟିତ,
ଟାଣିବାକୁ ବ୍ୟସ୍ତ ମନୁଷ୍ୟର ଗାଡ଼ି । ୪୦ ।
ଭ୍ରମନ୍ତି ମନୁଷ୍ୟ ପାଦ ଅନୁସରି,
ସେହି ମନୁଷ୍ୟର ପୋଷା ଶ୍ୱାନପରି । ୪୧ ।
ମନୁଷ୍ୟର ସ୍ମିତ, ମନୁଷ୍ୟଭ୍ରୁକୁଟି,
ହୋଇଛି ଜୀବନ ମରଣର ବୁଟୀ । ୪୨ ।
ମାନୁଷୀ ଅର୍ଚ୍ଚନା ଲାଗି ଅଗଣନ,
ରଚନ୍ତି ଯତନେ ପୁଷ୍ପ ଉପବନ । ୪୩ ।
ଦେବୀ ପାଇଁ ପୁଷ୍ପ ତହୁଁ ନେଲେ କେହି,
ମାଳିଏ ମରନ୍ତି ଜରିମାନା ଦେଇ । ୪୪ ।

ପବିତ୍ର ଶ୍ରୋତ୍ରିୟେ ନ କରି ଗୋଦାନ,
ଇତରେ ଦଅନ୍ତି କିଣି ଦିବ୍ୟ ଶ୍ୱାନ । ୪୫ ।
ତପ୍ତ ବୈତରଣୀ ହେବେ ପରା ପାରି,
ସେହି କୁକୁରର ହୋଇ ପୁଚ୍ଛଧାରୀ ? ୪୬ ।

ଧିକ ଧିକ ଆହା ! ଜାଣି ଶୁଣି ନରେ,
ଶାଶ୍ୱତକୁ ଛାଡ଼ି ଆସକ୍ତ ନଶ୍ୱରେ । ୪୭ ।
ଚିଦାକାଶ ପକ୍ଷୀ ଜାଣିଶୁଣି ମହା—
ଭ୍ରମ-ଜାଲେ ପଡ଼ି ହୁଅନ୍ତି ଆତ୍ମହା । ୪୮ ।
ଜାଣିଶୁଣି ସିନା ବଣିଜର ମାଣ୍ଡି
କରନ୍ତି ତେଲକୁ, ଛଡ଼ି ସୁନା ଖାଣ୍ଡି । ୪୯ ।
ସନ୍ତାମୃତ ଛଡ଼ି ହୁଅନ୍ତି ସକଳେ,
ନଖଶିଖ ଘାରି ବିଷୟ-ଗରଳେ । ୫୦ ।
ନଖଶିଖ ଘାରିଥିବାରୁ ଅଜ୍ଞାନ,
ଅବସ୍ଥରେ ହେଉଅଛନ୍ତି ବହୁଭାନ । ୫୧ ।
ମନୁଷ୍ୟ ପୂଜାରେ ଯେତେ କାଳ ଯାଏ,
ଆତ୍ମତତ୍ତ୍ୱେ ଯେବେ ସେଇଥିରୁ ପାଏ । ୫୨ ।
ସାରସାର ବୁଦ୍ଧି ଦେଉଥାନ୍ତେ ଲୋକେ,
ଓହ୍ଲାଇ ଆସନ୍ତା ସ୍ୱର୍ଗ ମର୍ତ୍ତ୍ୟଲୋକେ । ୫୩ ।
ନିରୁପାଧି-ସତ୍ତ୍ୱ ପୀୟୁଷ ଆସ୍ୱାଦ,
ସ୍ୱପ୍ନେ କେହ୍ନି ଲୋଡ଼ୁ ନ ଥାନ୍ତେ ଉପାଧି । ୫୪ ।
ହେଉଥାନ୍ତା ସିନା ଅକ୍ଲେଶେ ଅର୍ଜନ,
ଏ ମର ଜୀବନେ ଅମର ଜୀବନ । ୫୫ ।
ହେଉଥାନ୍ତା, ଆହା ! ମର୍ତ୍ତ୍ୟେ ସ୍ୱର୍ଗଗେହେ,
ଦେବତା ମାନବ ଏହି ମର୍ତ୍ତ୍ୟଦେହେ । ୫୬ ।
ମଞ୍ଚ ପାଶେ କମ୍ପା ଏତେ ଲୋକ ଠିଆ ?
ଲାଗିଅଛନ୍ତି ପର ଆସନ କଣିଆ ? ୫୭ ।
ନିଜ ଅନ୍ତମିକା-ସଦୃଶ ଆସନ,
ନ ଦେଖି ଥୋକାଏ ମହା ମୂର୍ଖମନ । ୫୮ ।

ଔପାଧିକ ରାଜା ଉଚ୍ଚାସନେ ରୁଷି,
ଷଣ୍ଢ ହୋଇଛନ୍ତି ରାଜା ମଉଡୁସି । ୫୯ ।
ଆସନ ସକାଶେ ବୃଦ୍ଧେ ଏଡ଼େ ବାଇ !
ବାଳକେ ଯେସନେ କ୍ରୀଡ଼ନକ ପାଇଁ । ୬୦ ।
ଲଡ୍ଡୁ ଲାଗି ଯଥା ଯୁଝିଥାନ୍ତି ପିଲା,
କେତେ ବୃଦ୍ଧେ କରୁଛନ୍ତି ବାଳଲୀଳା । ୬୧ ।
କେହୁ ବୋଲେ, "ମୁହିଁ ଉଚ୍ଚପଦଧାରୀ;
ଉଚ୍ଚ ଆସନର ମୁହିଁ ଅଧିକାରୀ !" । ୬୨ ।
ଆନ ବୋଲେ, "ମୁହିଁ ଉଚ୍ଚ ବଂଶଧର,
ତୁ ସିନା ଅଢ଼େଇ ଦିନିଆ ଗୃକର । ୬୩ ।
ବଡ଼ ସିନା ତୁହି ରାଜଦତ୍ତ ମାନେ,
ମାଷ ତୋର କାହିଁ ନାହିଁ ଭୂମି ମାଣେ । ୬୪ ।
ମୋତେ କେ ନ ଜାଣେ ଏ ମହୀମଣ୍ଡଳେ ?
ମୋର ଏ ଆସନ କମ୍ପା ହେଲା ତଳେ ?" । ୬୫ ।
ଆନ ବୋଲେ, "ମୁହିଁ ପାଇକର ନାହା,
ବପଦେ ରାଜାର ଆଶ୍ରା ମୋର ବାହା । ୬୬ ।
ଏହି ହସ୍ତେ କେତେ ମସ୍ତକ ଗଡ଼ାଇ,
କେତେ କେତେ ଗ୍ରାମ ଦେଇଛି ପୋଡ଼ାଇ । ୬୭ ।
ସଂଗ୍ରାମେ ପଦକ ଦେଲେ ମୋତେ ରାଣୀ
ମୋହଠାରୁ ପୁଣି କଏ ବଡ଼ ମାନୀ ?" । ୬୮ ।
ଆନ ବୋଲେ, "ମୁହିଁ ଅଟଇ ପୁଲିସ,
ବନା ମେଘେ ସୃଜ ପାରଇ କୁଳିଶ । ୬୯ ।
କ ଦୋଷୀ, କ ଅବା ଦୋଷହୀନ ନର,
ମୋ ପ୍ରତାପେ ରାଜ୍ୟେ ସର୍ବେ ଥରହର । ୭୦ ।

କିବା ଦୁଃଖୀ ରଙ୍କୀ କି କୋଟିପତିଏ
ମାଲ-ପଗଡ଼ିକି ନ ଡ଼ରନ୍ତି କିଏ ? । ୭୧ ।
ମୋତେ ଦେଖି କିଏ ନ ଭଜେ କମ୍ପକୁ ?
କିଏ ନ ଡରଇ ଉତ୍କ୍ରମଣ ଚମ୍ପକୁ । ୭୨ ।
ରାଜାଙ୍କ ଅଟଳ ବିଶ୍ୱାସ ମୋଠାରେ,
ମୋହଠାରୁ କିଏ ବଡ଼ ଦରବାରେ ? । ୭୩ ।
ଆନ କହେ, "ମୁହିଁ ନଗର-ରକ୍ଷଣୀ-
ସଭାରେ ସଦସ୍ୟ-ଦଳର ଅଗ୍ରଣୀ । ୭୪ ।
ଲାଟଙ୍କର ହେଲେ ଶୁଭ ଆଗମନ,
ସର୍ବାଗ୍ରେ କରନ୍ତି ମୋ ପୂଜା ଗ୍ରହଣ । ୭୫ ।
ମୋର ହସ୍ତେ ନ୍ୟସ୍ତ ନଗରର ସ୍ୱତ୍ୱ,
ସମ୍ମାନେ ମୋହୋର ସର୍ବୋପରେ ଦାବି" । ୭୬ ।
କେହ୍ନ ବୋଲେ, "ମୁହିଁ ଅଟଇ ଦପୋର୍ଟୀ,
କଳା ଲୋକଙ୍କର ଉନ୍ନତିର କୋଟି । ୭୭ ।
ଲଭିଅଛୁ ମୁହିଁ ବଳେ କଉଶଳେ,
ମୋତେ ପୁଣି କିଏ ବସାଇବ ତଳେ ?" । ୭୮ ।
ଲୋଭୀ ଭେଜେ ଯଥା ସ୍ୱମର୍ଯ୍ୟାଦା ଜାଗି
ପ୍ରତିବାସୀ-ପଦେ କହେ ଦେବା ଲାଗି । ୭୯ ।
କେହି ଅବା ନିଜ ଦୁଃଖକୁ ଚପାଡ଼ାଇ,
ପ୍ରତିବାସୀ-ଦୁଃଖ ଗାଇ ହେଉଥାଇ । ୮୦ ।
କହେ, "ନ୍ୟାମ୍ୟ ନାହିଁ ଏହି ଦରବାରେ,
ତା ଆସନ ଭୂମି ଆଗେ କି ବିଶ୍ୱରେ ?" । ୮୧ ।
ସଭାପତିଙ୍କର ଖଟଣି କଙ୍କର,
ବୋଲି କେହି ହେଉଛନ୍ତି ଫରଫର । ୮୨ ।

ଗରୁଡ଼ ଉପରେ ଦେଖାନ୍ତି ପ୍ରତାପ,
ସେ ଯେଣୁ ଅଟନ୍ତି ଶିବଙ୍କର ସାପ । ୮୩ ।
ସବୁ ଦେଖେ, ସବୁ କାଳେ ଊର୍ଦ୍ଧ୍ୱମୁହାଁ
ହୋଇଥାନ୍ତି ସିନା ଶ୍ରୀଗୁମୁ-ଗୁମୁଆ । ୮୪ ।
ଲାଗିଛି ଏରୂପେ ଅହମିକା ଖେଳ
ଅହମିକା-ସିନ୍ଧୁ ହୋଇଛି ଉଦ୍‌ବେଳ । ୮୫ ।
ଅହମିକା ବାୟୁଗ୍ରସ୍ତ ହୋଇ ବ୍ୟସ୍ତେ
"ମୁଁ" "ମୁଁ" ଲଗ ଆବା ମରନ୍ତି ସମସ୍ତେ । ୮୬ ।
ଘୋଟିବାରୁ ଘୋର ରଜୋରୂପୀ ବ୍ୟାଧି
ଉପାଧିରେ ବୁଡ଼ ଲୋଡନ୍ତି ଉପାଧି । ୮୭ ।
"ମୁଁ" ଭାବେ ଜଡିତ ଆମର ଚିତ୍ତକଣା
ଦେଖାଉଛି ଭବେ ଅସଂଖ୍ୟ ପେଖନା । ୮୮ ।
ଲଭଇ ଲାଞ୍ଛନା, ଆହା କେତେରୂପେ,
ପଡ଼ ଅହମିକାରୂପୀ ଅନ୍ଧକୂପେ । ୮୯ ।
ପିନ୍ଧି ନୂଆ ଚକଚକିଆ ପୋଷାକ
ଥୋକାଏ ବହନ୍ତି ମନେ ବଡ଼ ଜାଁକ । ୯୦ ।
ଭ୍ରମନ୍ତି ଚୌଦିଗେ ଅଙ୍ଗଭଙ୍ଗୀ କରି
ଅହମିକା-ବନେ ପ୍ରଜାପତି ପରି । ୯୧ ।
କମ୍ପା ଘନକାଳେ ଉଚ୍ଚେ ବର୍ହତୋଳି
କେକୀ ନାଚେ ଯଥା ଦୋହଲି ଦୋହଲି । ୯୨ ।
ସାହେବୀ ପୋଷାକ କେହୁ ଅବା ପିନ୍ଧି
ସପ୍ନିତେ କହଇ ବଙ୍କା ବଙ୍କା ହିନ୍ଦୀ । ୯୩ ।
ଥରେ ଥରେ କାସି ସାହେବୀ ଠାଣିରେ
ପୋଛଇ ବଦନ ରୁମାଲ କାନିରେ । ୯୪ ।

ପ୍ରକଟାଇ ପୃଷ୍ଠ ସାହେବୀ-ପଣିଆ
ଫରକଟା ଗୋଡ଼ ଦୁଇ ପୁଣି ିଆ । ୯୫ ।
ମିଶି ଘଷିଥିବା ବସିନ୍ନା ଯେସନ
କରୁଥାଇ ଦନ୍ତ୍ୟ ବର୍ଣ୍ଣ ଉଚ୍ଚାରଣ । ୯୬ ।
କୁଣ୍ଡଳ ଦେଖାଇ ହେବା ଅଭିପ୍ରାୟେ
କୁଣ୍ଡଳୀ ଯେସନ ମୁଣ୍ଡକୁ ହଲାଏ । ୯୭ ।
ସମସ୍ତ ଜାଣିବା ମିଛ ବାହାନାରେ
ଘଡ଼ କାଢ଼ି କେନ୍ଦ୍ର ଦେଖାଏ ବାହାରେ । ୯୮ ।
ନାନା ଅଳଙ୍କାର କରେ ଝଲମଲ,
ନବ୍ୟ ଢଙ୍ଗ ଚେନ, ପ୍ରାଚୀନ କୁଣ୍ଡଳ । ୯୯ ।
ହୃଦେ ଲମ୍ବମାନ ସୁବର୍ଣ୍ଣ ତକମା,
ନାସିକା ଶୋଭନ ସୁବର୍ଣ୍ଣ ଚଷମା । ୧୦୦ ।

କେତେ ରଙ୍ଗ କରୁଛନ୍ତି କେତେ ଜଣ,
କହିଲେ ନ ସରେ ନର ଫୁଲପଣ । ୧୦୧ ।
ଘାରଅଛ ପ୍ରଭୁଜନେ ଯେଉଁ ନିଶା,
କି ଗୁର କଥାରେ କି ଘୋର ଜଗୀଷା । ୧୦୨ ।

ଅକିଞ୍ଚନ କେହି କହେ ହାତ ଯୋଡ଼ି,
"ଦୁଆ ଲାଗ କପାଁ କାମୋଡ଼ା-କାମୋଡ଼ି ?" । ୧୦୩ ।
ଅଳ୍ପଦିନ ସ୍ଥିତି ପାଇଁ ଭବ ଚଟି,
ଏଥିଲାଗି କପାଁ ଏତେ କଟାକଟି ? ୧୦୪ ।

ମଣି ଗିନା ଆପଣାକୁ ବଡ଼ କରି,
ମାନ କଥା ବୃଥା ଦେହ ମଣା ପରି । ୧୦୫ ।
ମନ୍ଦିରେ କାହାର ପ୍ରବେଶେ ପ୍ରୟାଣେ,
ଓଜନ ଉଚ୍ଛ୍ୱାସ ମଧ୍ୟ ତ ନ ଜାଣେ । ୧୦୬ ।

ଦେଖ ସାବଧାନେ ଜ୍ଞାନ-ନେତ୍ର ଫେଇ,
ଭୂମ୍ନ ମଧ୍ୟେ ସାନ ବଡ଼ ନାହିଁ କେହି । ୧୦୭ ।

ସାନ ବଡ଼ ଜ୍ଞାନ ଦେହୀକର ଅଜ୍ଞାନ,
ଦେହୀ ଚଳେ କେହି ନାହିଁ ବଡ଼ ସାନ । ୧୦୮ ।

ଜଣେ ଜଣେ ଗୋଟି ଗୋଟିଏ ସ୍ଫୁଲିଙ୍ଗ,
ଜ୍ୱଳିଯିବ ଭବ-ଲୀଳା ହେଲେ ସାଙ୍ଗ । ୧୦୯ ।

ସର୍ବେ ଯିବ, ଭାଇ, ଉଦ୍ଭେଇ ଅଚିରେ,
ବୁଦ୍‌ବୁଦ ପରାଏ ଏହି ନଦୀ ନୀରେ । ୧୧୦ ।

ଅଖଣ୍ଡ ଦଣ୍ଡାୟମାନ କାଳସିନ୍ଧୁ-
ମଧ୍ୟେ ବିନ୍ଦୁ ରହି ନୁହ ଏକ ବିନ୍ଦୁ । ୧୧୧ ।

ମାଟି ଘଟେ ବୃଥା ବହି ଅଭିମାନ,
ଅଜ୍ଞାନେ ଧରାକୁ କର ସରାଜ୍ଞାନ । ୧୧୨ ।

ଅଜ୍ଞାନେ ନଶ୍ୱର ଭାଗ୍ୟର ଗରବେ,
ଭାଲ ଚୁମ୍ବେ ଭୂମି, ସଫରୀ ସରବେ । ୧୧୩ ।

ସପ୍ତବିତସ୍ତିର କୀଟ ହୋଇ, ଭାଇ,
ବୃଥା କର କପାଁ ଭାଗ୍ୟର ବଡ଼ାଇ ? ୧୧୪ ।

ବୃଥା କର କପାଁ ସମ୍ପଦେ ବିଶ୍ୱାସ ?
ବିଜୁଳି ପ୍ରାୟ ଯା ବିଭବ ବିକାଶ । ୧୧୫ ।

ସୁଖ କ୍ଷଣକେ ଯେ ଚକ୍ଷୁ ଚମକାଇ,
ଦୁଃଖବଜ୍ରେ ପରେ ଘରେ ଧରାଶାୟୀ । ୧୧୬ ।

ବୃଥା ବହି ଏହି ଭଙ୍ଗୁର ବୋଗଲ୍ଭୁ,
ମଣ ଆପଣାକୁ ଜଣେ ଜଣେ ପ୍ରଭୁ । ୧୧୭ ।

ରୋଗବ୍ୟାଜେ କାଳ ଥରେ ଥରେ ଚୁଟି,
ଝିଙ୍କି ଦେଲେ, ଏହି ଦର୍ପ ଯାଏ ଛୁଟି । ୧୧୮ ।

ଦର୍ପ ତୁଟେ ଛରେ ଚଢ଼ିଲେ ବଟଦର,
ହାବୋଡ଼େ ଆସି ଯେ ନ ଦେଇ ଖବର । ୧୧୯ ।
ଅବଧି କ ସେହ ଦର୍ପ ଛୁଟି ନାହିଁ ?
ଲଡ଼ୁଛନ୍ତି କଟେ, କବା କଥା ପାଇଁ ? । ୧୨୦ ।
କେତେ ଧନ ଲାଗି ମରେ ଅବା ଘର,
ଏଥି ଲାଗି କମ୍ପା ଜଡ଼େ ଆଡ଼ମ୍ବର ? । ୧୨୧ ।
ମଣ୍ଡେ ମଡ଼ କାଢ ଲୋଣ ଦୁଧ ଥୋଡ଼ା,
ପିଠୋବେଳେ ନଅଖନ୍ତି କାଠ ଗୋଡ଼ା । ୧୨୨ ।
ମଧ୍ୟେ କେତେ ଧନ ମାତର କୁଣିଆ,
ଏଥିପାଇଁ ପୁଣି ନ ଅଣ୍ଟେ ଦୁନିଆଁ । ୧୨୩ ।
କେତେଧନ ପାଇଁ ଦର୍ପର ଚଟାକା,
ଟୋକା, ଦେଉଥିବ, ଖାଉଥିବ ଧକ୍କା ? । ୧୨୪ ।
ଏହି ଦରବାରେ ଲୁଣ୍ଡେ ଯେତେ ନରେ,
ଏଥିରୁ ଥୋକାଏ ବର୍ଷକ ଭିତରେ । ୧୨୫ ।
ଅନ୍ୟ ଦରବାରେ ହେବେଟି ତଲବ,
ତୁମ୍ଭେ ତହିଁଥିବା ନୋହେ ଅସମ୍ଭବ । ୧୨୬ ।
ସେ ଦାରୁଣ ଦରବାରେ ଯିବାପାଇଁ,
ଗାଡ଼ି ଘୋଡ଼ା ଆଦି ଲୋଡ଼ା ହେବ ନାହିଁ । ୧୨୭ ।
ମାଲିକ ମୃତ୍ୟୁରେ ଆସି ରୋଗ ନାନା,
ଦେଖାଇବେ ତଲବର ପରବାନା । ୧୨୮ ।
ତଲବ ନୁହଇ ଓ୍ୱାରେଣ୍ଟ ସିନା ସେ,
ନ ଦେବେ ମାଗିଲେ ମହଲତ ମାସେ । ୧୨୯ ।
ଜଣେ ଯିବା ପାଇଁ, ନୋହି ବ୍ୟସ୍ତବ୍ୟସ୍ତ,
ଘରବାଡ଼ି ଜମିଜମା ବନ୍ଦୋବସ୍ତ । ୧୩୦ ।

ଆର୍ତ୍ତ ଦାରା ସୁତ ବେଦନେ ମୁଖର
ସ୍ନେହକାଙ୍କ୍ଷୀ-ଜନ-ଲୋତକେ ଜର୍ଜର । ୧୩୧ ।
ମୃତ୍ୟୁଶଯ୍ୟା, ଅଣରୁଣ ଲୀଳାସ୍ଥଳୀ,
ସେ ଦରବାରର ଭୀଷଣ ଦେହଳୀ । ୧୩୨ ।
ଅଭ୍ରାନ୍ତ ଘଟିକା-ଯନ୍ତ୍ର ବାମ କରେ
ଭୀମ କାଳଦଣ୍ଡ ଧରି ବାମେତରେ । ୧୩୩ ।
ସେହି ବୈଶ୍ୱାନର-ଦରବାରେ ନିଜେ
ପ୍ରେତପତି ସଭାପତିରୂପେ ବିଜେ । ୧୩୪ ।
ଥରେ ମନେ କର ସେହି ଦରବାର
କି ଭଳି ଆସନ ଲଭିବ ସେଠାର । ୧୩୫ ।
କି ଭଳି ପୋଷାକ ଲୋଡ଼ା ହେବ ତହିଁ,
ଲଭିବ ସମ୍ମାନ କେଉଁ ଗୁଣ ବହି ? । ୧୩୬ ।
ଏ ଦରବାରର ଆସନ ଫରଦ,
ଚିତ୍ରଗୁପ୍ତ-ପାଞ୍ଜି କରିଦେବ ରଦ । ୧୩୭ ।

---

## ବର୍ଷା

( ସ୍ୱର୍ଗତ କବିବର ରାଧାନାଥ—ତୁଳସୀସ୍ତବକରୁ )।

( ରାଗ—କଳହଂସ କେଦାର )

* ପ୍ରସ୍ରବଣ-ଶଇଳେ କଲେ ବସନ୍ତ
ସୌମିତ୍ରି ସଙ୍ଗେ ପ୍ରଭୁ ରାଘବପନ୍ତ,
ବହଇ ଗୋଦାବରୀ ସେ ଗିରିପାଦେ
ଶିଳା-ବନ୍ଧୁର ଶେଷେ ଝର୍ଝରନାଦେ । ୧ ।
ଏକେ ସୁନ୍ଦର ଗିରି ଝର-ଶୀତଳ,
ଦୁଜେ ମଧ୍ୟରେ ବିଜେ ବରଷାକାଳ ।
ମେଘମାଳେ ମେଦୁର ଦେଖି ବିତାନ
କହନ୍ତି ଲକ୍ଷ୍ମଣଙ୍କୁ ଶ୍ରୀ ରଘୁରାଣ— । ୨ ।
"ଲକ୍ଷ୍ମଣ, ଘନ ନେହି ନାଚଇ କେକୀ,
ଭକତ ଯଥା ଭବମାୟା ଉପେଖି;
ବିରରେ ଅକାତରେ ଜୀବନ ଦାନ
ଧନ୍ୟ, ଯେ ଦାତା ଜାଣେ ଯାଚକ-ମନ । ୩ ।
ନୀଳ ନୀରଦମାଳେ ଖେଳେ ଚପଳା,
ଖଳ-ପୀରତି ପ୍ରାୟେ ସଦା ଚପଳା;
ବର୍ଷନ୍ତି ମହୀମୁଖେ ନଈ ଅମ୍ବୁଦେ,
ବିଦ୍ୟା-ସମ୍ପଦେ ଯଥା ନମନ୍ତି ବୁଧେ । ୪ ।

---

* ପ୍ରସ୍ରବଣ—ଗୋଦାବରୀ ତୀରବର୍ତ୍ତୀ ନିର୍ଝରଶୋଭିତ ସ୍ୱନାମପ୍ରସିଦ୍ଧ ପର୍ବତ ।

ବେନି କୋଟିକ ନବ୍ୟ ବେଢ଼ି ଶିଖରେ,
ବିବର୍ଣ୍ଣ-ଜ୍ୟୋତି-ସ୍ରୋତ ସୃଜି ଅମ୍ବରେ,
ମଣ୍ଡେ ଜୀମୂତ ଭାଲ ଶକ୍ର-କାର୍ମୁକ,
ଆଶା ଉଜଳେ ଯଥା ଆସ୍ତିକ ମୁଖ । ୫ ।
ଠାବେ ଠାବେ ଶଇଳ ମାଳ ବସ୍ତ୍ରଦେ,
ଧବଳ ଅଭ୍ରଖଣ୍ଡ କି ଶୋଭା ବହେ !
ଚନ୍ଦ୍ରେ ଦ୍ୱଅଇ ଧୂତେ ଚନ୍ଦନ୍ତି ଟିକା,
କ୍ଷୀରୋଦ ଫେଣ ବାସୁ ଅଙ୍ଗେ ଚୁଡ଼କ । ୬ ।
ଜଳପ୍ରପାତ ଗର୍ଜି ଗମ୍ଭୀର ରବେ,
[illegible] ଭୈରବେ;
ସେ ଗବେ ଉତ୍ତରବ ଦଅଇ ଦଶ,
ଧର୍ମ ଶାସନେ ଦୁନ୍ଦୁଁ ବଢେକ ପରି । ୭ ।
ଅନନ୍ତ ଧାରାପାତ ଶଇଳଗଣ,
ଖଳ ବଚନ ଯଥା ସହେ ସୁଜନ;
ମିଟିନ୍ତି ଝର, ଦେଖ, ତାଙ୍କର ଅଙ୍ଗେ,
ପାଷାଣେ ଜନ-ଦୋଷ ଯଥା ସୁହଙ୍କେ । ୮ ।
ବ୍ରଲନ୍ତି କୂଳ ଲଙ୍ଘି ନିଃସରନ୍ତେ,
ମତ୍ତ ପାମର ଯଥା ଅଳପ ବିତ୍ତେ;
ଗୋଧାବଲ୍ଲୀକ ସର୍ବେ କରନ୍ତି ଗତି,
ନହତ ଆତ୍ମା ବିନୁ ନାହିଁ ମୁକତି ? । ୯ ।
ଅବିଳ ନବଜଳ ଧରଣୀ ମଣ୍ଡ,
ମାୟାରେ ଜୀବ ଯଥା ଜଡ଼ି ହୁଅଇ;
ଶରତେ ମରପାତେ ପ୍ରଫୁଲ୍ଲ ସର,
ସାତ୍ତ୍ୱିକ ସ୍ନାନେ ଯଥା ସାଧୁ ଅନ୍ତର । ୧୦ ।

ନିମ୍ନଗ-ନୀର ବେଗେ ସାଗରେ ଧାଇଁ,
ଶାଶ୍ୱତେ ଭକ୍ତ ଜନ ମନ ପରାୟେ;
ସାଗରେ ନିଜ ଗୋତ୍ର ଯାଏ ବିସ୍ମରି,
ଭକ୍ତ ତନ୍ମୟ ଯଥା ଲଭିଲେ ହରି । ୧୧ ।
ଉଚୁଡ଼ି ପଡ଼େ କ୍ଷୀର-ବିଟପୀ ନୀରେ,
ବିଟପୀ ମନ ଯଥା ଲମ୍ପଟ-ଟୀରେ;
ମାଘ ଶଇଳ, ଦେଖ, ଉଭା ଅଟଳେ,
କାମି-ବୃନ୍ଦରେ ସନ୍ତ ମନ କି ଟଳେ ? । ୧୨ ।
ଲଙ୍ଘଇ ନଦୀସ୍ରୋତ ସେତୁବନ୍ଧନ,
ରାଜଦ୍ରୋହୀ ଯେସନ ରାଜଶାସନ;
ବନ୍ଧୁ ପାଳନ୍ତୁ ବାଡ଼ ଦେଇ କି ଆସ୍ଥା,
ମର୍ଯ୍ୟାଦା ଲଙ୍ଘେ ଯଥା ସ୍ୱତନ୍ତ୍ର ନାରୀ । ୧୩ ।
ଦର୍ଦ୍ଦୁର-ରବ ଶୁଣି ନୀରବ ପିକ,
ମୂଢ଼ ସଭାରେ ମୂକ ଯଥା ଧାର୍ମିକ;
ଡାହୁକ ବଂଶକୁଞ୍ଜେ ନିରତେ ରବେ,
ବହୁଭାଷୀ ଯେସନ କଟୋକ୍ତି ସ୍ୱଭାବେ । ୧୪ ।
ହରିତ ଦୂର୍ବାଦଳେ ହୋଇ ମଣ୍ଡନ,
ନିଦାଘ ରୁକ୍ଷ ମର୍ତ୍ତ୍ୟ ଦିଶେ ଶୋଭନ,
ସରସ ସାଧୁ ହୃଦ ହୁଏ ଯେପରି,
ଶୁଷ୍କ ବୈରାଗ୍ୟେ ଭକ୍ତିରସ ସଞ୍ଚରି । ୧୫ ।
ପଲ୍ଲବ କଅଁଳିଲା ବୃକ୍ଷେ ଅନେକ,
ସାଧକ-ହୃଦେ ଯଥା ଉଦେ ବିବେକ,
ଅର୍କ-ପାଦପ ହେଲା ପତ୍ରବର୍ଜ୍ଜନ,
ସୌରାଜ୍ୟେ ଖଣ୍ଡେ ଯଥା ଦୁର୍ଜ୍ଜନ ମାନ । ୧୬ ।

**କଦମ୍ବ ବିକଶିଲ ଗିରି-କାନନେ,**
କଦମ୍ବ-ବନ୍ଧୁ-ମେଘ-ମନ୍ଦ୍ର ନିସ୍ୱନେ;
ଭକତବନ୍ଧୁ ହରିନାମ ଶୁଣିଲୁ,
ହର୍ଷେ ପୁଲକେ ଯଥା ଭକତ ତନୁ । ୧୭ ।
ଗୁଳ୍ମ ଗହଳେ ପଥ ଗଲାଟି ହରି,
ବିଧର୍ମୀ-ରାଜପଣେ ଶାସ୍ତ୍ର ଯେପରି;
ଶସ୍ୟେ ବସୁଧା କେଡ଼େ ଶୋଭା ଆସ୍ପଦ,
ଉପକାରୀ ଜନର ଯେହ୍ନେ ସମ୍ପଦ । ୧୮ ।
ଉଭେଇ ଗଲେ ନକ୍ଷତ୍ର ଜ୍ୟୋତିଷ୍କଗଣେ;
ଜ୍ୟୋତି ଦେଖାଇ ହେଲେ ଜ୍ୟୋତିରିଙ୍ଗଣେ,
ମୂର୍ଖରାଜ୍ୟେ ଯେସନ ବଡ଼େ ଆଦର
ନିର୍ଗୁଣେ, ଗୁଣିଜନେ ହୁଅନ୍ତି ପର । ୧୯ ।
କୃଷକେ ଉପାଡ଼ନ୍ତି ବାଳୁଙ୍ଗା କ୍ଷେତ୍ରୁଁ,
ସାଧୁ ଯେସନ ଆତ୍ମବଡ଼ିମା ଚିତ୍ତୁଁ,
ସଲିଳ ପଳାଇଲେ କୋଳେ ଗୃହତେ,
ଅବୁଝା ରାଜ୍ୟ ରାଜ୍ୟ ଯଥା ପଣ୍ଡିତେ । ୨୦ ।
ନ ଉଠେ ମରଯନ୍ତ୍ରେ ତୃଣ ଉଷରେ
ବିକାରେ କାମ ପ୍ରାପ୍ତେ ସନ୍ଥ-ଅନ୍ତରେ,
ଜନ୍ତୁ-ସଙ୍କୁଳ ବନସ୍ଥଳୀ ସମ୍ପ୍ରତି,
ସୌରାଜ୍ୟେ ପ୍ରଜାପୁଷ୍ଟି ରାଷ୍ଟ୍ରେ ଯେମନ୍ତି । ୨୧ ।
ବାଟୋଇ ଠାବେ ଠାବେ ଅଟକି ରହେ,
ଇନ୍ଦ୍ରିୟ ଯଥା ବିବେକଜ୍ଞାନ ଉଦୟେ,
ପ୍ରବଳ ବାୟୁ କେବେ ତଡ଼େ ଜଳଦ,
କୁପୁତ୍ର ଯଥା କୁଳ, ଧର୍ମ-ସମ୍ପଦ । ୨୨ ।

ଷଣେଣ ନିବିଡ଼ ତମ ଗ୍ରାସଇ ଧରା
ଷଣେ ଉପୁଜେ ପୁଣି ପ୍ରଚଣ୍ଡ ଖରା,
କୁସଙ୍ଗ ଏହିପରି ସୁଜ୍ଞାନ ନାଶେ,
ସୁସଙ୍ଗ ଏହିପରି ଜ୍ଞାନ ପ୍ରକାଶେ । ୨୩ ।
· ଦେଖ, ମଳିନ ହୋଇ ଆଶ୍ରମ ସର
ନ ବହେ ହୃଦେ ଛବି ଖର ବନର,
ମତିକି କଳୁଷିତ କଲେ ଯେସନେ
ଅକ୍ଷମ ଜନେ ପର ଗୁଣ ଗ୍ରହଣେ । ୨୪ ।
ଦେଖ ଦେଖ ଅଗ୍ରତେ ସରସୀ-ଜଳେ
ଚଢ଼ି ମଣ୍ଡୂକ ଦ୍ଦୂର ଅହି କବଳେ
ଡାକଲେ ରବୁଁ ରବୁଁ, ଉର୍ଦ୍ଧ୍ୱେ ଉଡ଼ୁଡ଼ୀନ
ଦିହଙ୍କି ଶିଶୁ ଜକି ଦେଲା ଗିଳଣ । ୨୫ ।
କାଳ-କବଳେ ସିନା ଏରୂପେ ଯାଇ,
ଆଗତେ ନର ଧାରି ହେଉଣ ଥାଇ,
ତେବେହେଁ ମନାସଇ ଲଭି ଏ ଦଶା
ମେଣ୍ଟାଇବାକୁ ଭବ-ଭୋଗ-ଲାଳସା । ୨୬ ।
ବରଷାକାଳ ଅଟେ ଉଦ୍ଭିଦ-ମିତ୍ର,
ମାତ୍ର ପଙ୍କଜ ମଲା, ନୋହେ ବିଚିତ୍ର !
ଜଳ-ଚଞ୍ଚଳ ହେଲା ତା ପକ୍ଷେ ଯମ,
ଅତି-ସମ୍ପଦ, ବାବୁ, ମହାବିଷମ” । ୨୭ ।

---

# ପଦ୍ମ

( ସ୍ୱର୍ଗତ ଭକ୍ତକବି ମଧୁସୂଦନ )

( କଳହଂସ କେଦାର ବୃତ୍ତ )

୧

କୋଟି ଲାବଣ୍ୟନିଧି ରେ ପଦ୍ମ ତୁମ୍ଭି,
କି ଅମୃତେ ତୋ ତନୁ ଗଢ଼ିଲା ବିଧି ?
ତୋ ରୂପ-ଦରଶନେ ମୋର ହୃଦୟ
ପୂର୍ଣ୍ଣ ଆନନ୍ଦେ ହୁଏ ଅମୃତମୟ ।

୨

ଟଳ ଟଳ ସୁନୀଳ ସରସୀଜଳ,
ଢଳ ଢଳ ଶ୍ୟାମଳ ନଳିନୀଦଳ,
ଝଳ ଝଳ ଭାସ୍କର— ରଶ୍ମି ଉଜ୍ଜ୍ୱଳ,
ତା ମଧ୍ୟେ ଢଳ ଢଳ ତୁମ୍ଭ କମଳ ।

୩

ହସ ହସ ବଦନେ ହରଷଭରେ
ଅନାଇ ରହିଅଛୁ ତୁ ଦିବାକରେ;
ତୋ ମୁଖେ ଜ୍ୟୋତିଧାରା ସେ ଦିବାକର;
ଢାଳଇ ଅବିରଳ ଆରେ ପୁଷ୍କର ।

୪

ପିଇ ତୁ କି ଆନନ୍ଦେ ପୀୟୂଷ ସର
ସେ ଶୁଭ୍ର ଜ୍ୟୋତିଧାରା ଭକତି କରି;
ଆହା କି ଦିବ୍ୟଶ୍ରୀ ତହୁଁ ତୁ ଲଭୁ,
ଧନ୍ୟ ଉତ୍ପଳ, ଧନ୍ୟ ତୋହର ପ୍ରଭୁ ।

୫

ମକରନ୍ଦ-ଅମୃତ ହୃଦେ ତୋହର,
ତହୁଁ ଝୁରଇ ବାସ କ ମନୋହର !
ସେ ମଧୁପାନେ ମତ୍ତ ମଧୁପଦଳ,
ସେ ସୌରଭେ ପବନ କେଡ଼େ ଶୀତଳ ।

୬

(ଶ୍ୱେତଲୋହିତେ ରଞ୍ଜା ତୋ ଶୁଭ୍ର ତନୁ,
ତାରେ ଦେଖିଲେ କେବେ ନ ଯିବ ମନୁ;
ସବୁ ଶୋଭାର ତୁହି ଉପମା ସ୍ଥଳ;
ଭକତ ପ୍ରେମିକର ତୁହି ସମ୍ବଳ ।)

୭

(ସ୍ନେହ କରୁଣା ଭକ୍ତି ପବିତ୍ର ରସ
ପୂରିଛୁ ତୋ ଅନ୍ତରେ ତାମରସ !
ନୋହିଲେ କାହିଁ ତୋର ଦର୍ଶନ ମନ
ବିମଳ ପ୍ରେମରସେ ହୁଏ ମଗନ ?)

୮

ମଧୁମୟ ପବିତ୍ର, ଯାହା ବିଶ୍ୱରେ,
ତୋ ନାମ ସଙ୍ଗେ ମିଶା ବିଧାତା ବରେ;
ପ୍ରିୟ ମୁଖ ନୟନ କର ଚରଣ
ତୋ ନାମ ସଙ୍ଗେ ମିଶା ସୁଖ କାରଣ ।

୯

ସତ୍ୟ ଶିବ ସୁନ୍ଦର ପରମେଶ୍ୱର
ନାମ ସଙ୍ଗତେ ଲଗ୍ନ ନାମ ତୋହର

ତେଣୁ ରେ ଅରବିନ୍ଦ ଭକ୍ତଜନର
ବନ୍ଧୁ-ପଦାରବିନ୍ଦ ସୁମନୋହର ।

୧୦

ସଙ୍ଗ ଶୋଭାର ସଦ୍ମ ରେ ପଦ୍ମ, ତୋର
ସଙ୍ଗେ ନିଗୂଢ଼ ଯୋଗ ଅଛଇ ମୋର ।
ଜୀବନ ମରଣରେ ତୋ ସଙ୍ଗେ ମିଶି
ଆଜି ମୋ ମନ ପଦ୍ମ ଫୁଟଇ ହସି ।

୧୧

କଳୁଷ-ପଙ୍କେ ମୁହିଁ କେତେ ମଳିନ,
କେମନ୍ତେ ସର ତୋର ହେବି ନଳିନ !
ପଙ୍କଜ ଅଟୁ ତୁହି ତେଣୁ ଭରସା
ତୋ ପରି ଶୁଭ୍ର ହେବି ଲଭି ସୁଦଶା ।

୧୨

ଅନନ୍ତ ମହେଶ୍ବରେ ମୋ ପ୍ରାଣସାଇଁ
ବୋଲି, ଗର୍ଜିବ, ସଦା ଥିବ ଅନାଇଁ ।
ଶିଖାଅ ମୋତେ ସଦା ଏ ପୁଣ୍ୟବ୍ରତ;
ନ ହୋ'ବ ଆଶିଷେ ପୂରୁ ମୋ ମନୋରଥ ।

---

# ସୀତାଂ ବନବାସ

( ସ୍ୱର୍ଗତ ଭକ୍ତକବି ମଧୁସୂଦନ )

ଅଗ୍ରଜ-ଆଜ୍ଞାବଦ୍ଧ ସୌମିତ୍ରି ରଥୀ
ରାମ-ହୃଦୟ-ଜ୍ୟୋତ୍ସ୍ନା ବୈଦେହୀ ସାଥୀ ।
ବର୍ଜି ଭାଗୀରଥୀ ତୀର କାନନେ,
ଲେଉଟାଇଲେ ରଥ ଅଥୟ ମନେ । ୧ ।
ଘନ ଘନ ଲୋତକଧାର ନୟନୁ,
ଝରେ ଉଚ୍ଛଳ ବକ୍ଷ ତିନ୍ତାଇ ଧୀନୁ ।
ଘୋର ଘର୍ଘର ଘୋଷେ ପୂରି କାନନ,
ଚଳିଲା ହା ହା ରବେ ଯେସନେ ସ୍ୟନ୍ଦନ । ୨ ।
କମ୍ପି ଉଠିଲେ ବନ୍ୟମୃଗ ଜନମା,
ରୁନ୍ଧିଲେ ଗଙ୍ଗା ରଘୁକୁଳପାବନୀ ।
ଜୀମୂତ-ଆବରଣେ ଦେବ ଭାସ୍କର,
ଲୁଚିଲେ ତମୋମୟ କରି ଅମ୍ବର । ୩ ।
ହେଲା ସେ ରଥ ଯହୁଁ ଦୃଷ୍ଟି ଅତୀତ
ପତିପ୍ରାଣା ଜାନକୀ ହେଲେ ମୂର୍ଚ୍ଛିତ ।
ବାତାହତ କନକପ୍ରତିମା ପରି,
ପଡ଼ିଲେ ମହୀତଳେ ରଘୁସୁନ୍ଦରୀ । ୪ ।
ମିହିରକୁଳଲକ୍ଷ୍ମୀ-ମୈଥିଳୀ ଦଶା,
ଦେଖିଣ ଭାଗୀରଥୀ ଦୁଃଖେ ବିବଶା ।
ଉରତ ବଧୂ-ମୋହ ବିନାଶ ଆଶେ,
ଶୀକର-ଶୀତବାୟୁ ସେବିଲେ ପାଶେ । ୫ ।

ଚେତନା ଲଭି ଦେଖି ବହୁତ କ୍ଷଣେ
ଏକାକିନୀ ସେ ଘୋର ବିଜନ ବନେ
ମରମଭେଦୀ ଶୋକେ ହୋଇ ବିକଳ
କହିଲେ ସାଧ୍ୱୀ ବର୍ଷି ଲୋତକଜଳ । ୬ ।

'ଚରଣପଦ୍ମ ଭକ୍ତ, ଦୟା ସାଗର !
ସତେ କି ଏ ଦାସୀକି କଲ ଅନ୍ତର ?
କେମନ୍ତେ କହ, ପ୍ରଭୁ ! ବଞ୍ଚିବ ଦିନ
ହରାଇ ସେ ଯୁଗଳ ପଦ-ନଳିନ ? । ୭ ।

କାହା ଶରଣ କରିବ ହେ ରଘୁରାଜ ।
ଜାନକୀ ଅଭାଗିନୀ ପଶିବ ଆଜ ?
ଭୟେ ଅସ୍ଥିର ଯେବେ ହେବ ହୃଦୟ
କିଏ ଅଭୟ ଦେବ, ହେ ଦୟାମୟ ! । ୮ ।

ଦାବାଗ୍ନି ରୂପେ ଯେବେ ଦୁଃଖ ଅନଳ
ଦହିବ ହୃଦବନ ହୋଇ ପ୍ରବଳ
କିଏ, ହେ ନାଥ, ସ୍ନେହ-ସଲିଳ ଦାନେ
ଶୀତଳ କରିବ ଏ ଦଗ୍ଧ ପରାଣେ । ୯ ।

ଆଉ କି ପ୍ରଭୁ ! ଏହି ଦଗ୍ଧ ନୟନ
ଦେଖିବ ନାହିଁ ସେହି ସୌମ୍ୟ ବଦନ ?
ଆଉ କି ଏ ଜନମେ ଏ ଅଭାଗିନୀ
ଏ ଦଗ୍ଧ ବକ୍ଷେ ରଖି ସେ ପାଦ ବେନି
ଶମିବ ନାହିଁ କହ, ହେ ରଘୁପତି !
ହୃଦୟଜ୍ୱାଳା ତାର ଦାରୁଣ ଅତି । ୧୦ ।

ଆଉ କି, ଜୀବିତେଶ ! ସେ ପାଦତଳେ
ଅଭାଗିନୀ ଜାନକୀ ବସି ବିରଲେ

ଶୁଣିବ ନାହିଁ ସେହି ମଧୁର ଭାଷା
ଦାସୀ ପକ୍ଷେ କି ପ୍ରଭୁ ଶେଷ ଏ ଆଶା ?
ଏ ପୋଡ଼ା ପ୍ରାଣେ ଆଉ କି ପ୍ରୟୋଜନ ?
ତୁମ୍ଭ ବିନା ଏ ବିଶ୍ୱ ଜୀର୍ଣ୍ଣ କାନନ । ୧୧ ।
ଅଭାଗିନୀଙ୍କୁ ଯେ ଭିଗରେ ଦେବର
ଆଣିଲେ ବନ୍ଧି ଏହି ବନ ଭିତର,
ଧାଇଲି ଏକା ଆହା ଜାହ୍ନବୀଜଳେ,
ଜୀର୍ଣ୍ଣଧାର ବହୁନେ କମ୍ପେ ବଳଲେ । ୧୨ ।
ଧବଳ ଫେନଅଞ୍ଚଳ ଯୋଗେ କରାଳ,
କ୍ଷଣେ ଗ୍ରାସିବେ ତୀବ୍ର ତରଙ୍ଗମାଳ
ନଥିବା କିଛି ତାଙ୍କୁ ତଟ ଉପରେ
ନାଶିବେ ଜୀର୍ଣ୍ଣ କରି ତା କଳେବର ।
ଆହା ଏ ଜୀବନଲେ ଦଶା ଯିବା
ଅଭାଗିନୀର ପ୍ରଭୁ, ସେ ପଦ ବିନା ? । ୧୩ ।
ସେ ପଦ ବିନା ଆଉ ନାହିଁ ଗନ୍ତବ୍ୟପଥ !
କାହିଁ ଏ ପାପୀୟସୀ ଦାସୀର ଗତି ?
ଅତି କଠୋର ପ୍ରଭୁ ! ଦାସୀର ଜୀବ,
ବଞ୍ଚିଥିବା ଯାହା ଛାଡ଼ ପଦ ଯିବ;
ଏତିକି ଭିକ୍ଷା, ନାଥ ! ଯେସନେ ପ୍ରାଣାନ୍ତେ
ଦାସୀ ପାଇବ ସ୍ଥାନ ସେ ପଦପ୍ରାନ୍ତେ ।" । ୧୪ ।
ଏମନ୍ତେ ଭାବି ଶୋକେ ବିହ୍ୱଳ ଅତି
କୁରରୀ ପ୍ରାୟେ ଉଚ୍ଚେ କାନ୍ଦିଲେ ସତୀ ।
ଦେବୀଙ୍କ ଦୁଃଖେ ବନସ୍ଥଳୀ କାତର
କାନ୍ଦିଲା ବହୁ ପ୍ରତିଧ୍ୱନି ଛଳରେ ।

ତେଜିଲେ ନୃତ୍ୟ ବର୍ହିକୁଳ ସକଳ,
ହରିଣୀଏ ଗ୍ରାସିଲେ ତୃଣକବଳ;
ମହୀରୁହବନ୍ଧ ପୁଷ୍ପ ଭୂଷଣ,
ଫିଙ୍ଗିଲେ ଅଙ୍ଗୁ ମହୀତଳେ ତତ୍‌କ୍ଷଣ । ୧୫ ।
କୁଶ ସମିଧ ପୂତ ହୋମସାଧନ,
ଆହରିବା ଆଶ୍ରମେ ଭ୍ରମୁଁ କାନନ ।
ପୁରାଣ-କବି ବୃଦ୍ଧ ମୁନି ଈଶ୍ୱର—
( ଗହନ ବନେ ନିଷ୍ଠୁର-ନିଷାଦ ଶର-
ବିଦ୍ଧ କ୍ରୌଞ୍ଚ ବିହଙ୍ଗ ଅବଲୋକନେ,
ଶୋକ-ଉଚ୍ଛ୍ୱାସ ଯାର ବହିଣ ଘନେ ।
ଶ୍ଳୋକରୂପେ ମୋହିଲା ସର୍ବ ଅବନୀ )-
ଚକିତେ ଶୁଣିଲେ ସେ କନ୍ଦନଧ୍ୱନି । ୧୬ ।
ମିଳିଲେ ଯାଇ ମହିଁ ଏକା ସୁନ୍ଦରୀ,
ଗଗନେ ରାହୁଗ୍ରାସେ ଶଶାଙ୍କ ପରି ।
ପୋଛିଣ ଅଶ୍ରୁଧାରା ଭକତିଭରେ,
ନମିଲେ ରଘୁବଧୂ ମୁନିପଦୁରେ ।
ଗର୍ଭଲକ୍ଷଣ ଦେଖି ମୁନିପୁଙ୍ଗବ,
" ବିଶାଳଯଶା ବୀର ତନୟ ଲଭ"
ଏମନ୍ତ ସୁଆଶିଷ ମୁନି ପ୍ରଦାନି,
ଭାଷିଲେ ଶାନ୍ତଚେତା ସାନ୍ତ୍ୱନାବାଣୀ— । ୧୭ ।
"ଜାଣିଲି ଧ୍ୟାନେ, ସତି, ରାବଣ-ଅରି,
ତେଜିଲେ ତୋତେ ମିଥ୍ୟା ପ୍ରବାଦେ ଡରି;
ସଖା ମୋହର, ବତ୍ସେ, ତୋର ଶ୍ୱଶୁର,
ବ୍ୟାପିଛି ଯାର ଯଶ ଏ ତିନିପୁର ।

ଜ୍ଞାନିଜନମାନଙ୍କ ହିତକାରକ,
ମୋହମୟ-ସଂସାର-ଦୁଃଖନାଶକ;
ମିଥିଳାନାଥ ମୁକ୍ତିତତ୍ତ୍ୱଦରଶୀ,
ପିତା ତୋହର ରାଜଶ୍ରେଷ୍ଠ-ରାଜର୍ଷି ।
ତୁ ପୁଣି ସତୀକୁଳ-ଅଗ୍ରତେ ସ୍ଥିତ,
ତେଣୁ ତୋ ଦୁଃଖେ ମୁହିଁ ଅତି ଦୁଃଖିତ । ୧୮ ।
ଘେନ ଆଶ୍ରୟ, ବତ୍ସେ, ନିର୍ଭୟ ମନେ,
ହୃଦବିକାର ନାଶି ଏ ତପୋବନେ;
ଋଷି ସଙ୍ଗ-ପ୍ରଭାବେ ଶ୍ୱାପଦେ ସର୍ବେ,
ନଶାହି ଶାନ୍ତ ଭାବେ ଅଛନ୍ତି ତହିଁ । ୧୯ ।
ଏଥି ଗୋ ରଘୁବଧୂ, ତୋର କୁମାର,
ଲଭିବେ ବିଧିମତେ ଜାତସଂସ୍କାର ।
ମୁନି-ଆଶ୍ରମେ ପୂର୍ଣ୍ଣ ତମସାତୀର,
ସଂସାର-ତମୋନାଶୀ ଏ ନଦୀ-ନୀର ।
ଅବଗାହଣ କରି ନିତ୍ୟ ସୈକତେ,
ସମ୍ପାଦ ବଳି ଦିଅ ବିଧାନମତେ ।
ଚିନ୍ତା ଉଦ୍‌ବେଗ ମନୁ କର ଗୋ ଦୂର,
ଭୁଞ୍ଜ ନିର୍ମଳ ଶାନ୍ତି ସୁଖ ପ୍ରଚୁର । ୨୦ ।
ନୀବାରବୀଜ, ଜାତ ବିନା କର୍ଷଣେ,
ସନ୍ତେ ଆହାର ଫଳ ମୂଳାସୁମନେ ।
ତୋ ନବ ଶୋକ ମୁନିକୁମାରୀଗଣ,
ହରିବେ ଭାଷି ମୃଦୁ ମଧୁବଚନ । ୨୧ ।
ଆଶ୍ରମର ତରୁଣ ତରୁନିକରେ,
ସତନେ ବଢ଼ାଇଣ ଘଟ ଜଳରେ ।

ମରେଣିବା ଆଗରୁ ତନୟମୁଖ
ଲଭିବୁ ତନୟର ପାଳନ ସୁଖ ।" । ୨୨ ।
ଋଷି ଏସନ ବୃଦ୍ଧ ଯତିପ୍ରବର
ନେଲେ ସୀତାଙ୍କୁ ତପୋବନ ଭିତର,
ସାୟାହ୍ନେ ଦେଖ ରଜନୀରେ ଶମ୍ଭାନ
ନୀଡମଧ୍ୟେ ରତ ପକ୍ଷୀ କୁଳଙ୍ଗମାନ ।
ଦେବରେ ଆସିଣ ମୁଗ୍ଧା ମୁନିକୁମାରୀ
ଅଞ୍ଚଳେ ପୋଛି ସୀତା-ନୟନବାରି
ସାନ୍ତ୍ୱନା-ବାକ୍ୟେ ରଘୁକାନ୍ତା-ହୃଦୟ
ପ୍ରବୋଧି ଘେନିଗଲେ ନିଜ ନିଳୟ । ୨୩ ।

---

## ସନ୍ଧ୍ୟା

( ସ୍ୱର୍ଗତ ଚନ୍ଦ୍ରକୁମାର ବଳଭଦ୍ର ଦେବ—ଭ୍ରାନ୍ତ ହିଲ୍ଲୋଳରୁ )

ପ୍ରତୀଚୀ ଲଲାଟେ ଲାଲି ଟୀକାପ୍ରାୟେ
ଆଭାସିଲେ ସୁପ୍ତାସାଙ୍କ,
ବହ୍ନ ଗୁଣ ବଢ଼ି ପାତାଳ ଭଜଲ
ପୂର୍ବ ଖର୍ବଠକ ସ୍ଥଇ । ୧ ।
ଫଗୁପୂର୍ଣ୍ଣ ଥାଳୀ ପର ରବ ବମ୍ବ
ଦେଖି ହେଲା ମନେ ପ୍ରତେ
ମାଣିକ୍ୟ-ପୃଷ୍ଠରେ ମଞ୍ଜୁ ବ୍ୟୋମଯାନ
ବୋଲା ହୋଇଛନ୍ତି କ ସତେ । ୨ ।
ବାରୁଣୀ-ଅଞ୍ଚଳେ ମନ ମୋହି ନେଲା
ଭାସ୍କର ବିମ୍ବ ବର୍ତ୍ତୁଳ,
ଭୁଲ ତାର ସିନା ହୁଅନ୍ତା ପ୍ରବାଳ—
ବଲ୍ଲୀରେ ଫୁଟିଲେ ଫୁଲ । ୩ ।
ପାଖେ ସନ୍ଧ୍ୟାରୁଣ ପାଖେ ସୁପ୍ତାଶ୍ୟାମ
ମାଲ୍ଲଗିଲ ଦୁହୁଁ ଦଶେ,
ରଜ୍ଜ ତମ ବେନ ପ୍ରକୃତି ଏକଦେ
ମିଶି ଯାଉଛନ୍ତି କ ସେ ? ୪ ।
କୁଙ୍କୁମରେ ବୋଳା ହେଲା ପ୍ରାୟ ଦଶେ
ସାନ୍ଧ୍ୟ ସ୍ୱଚ୍ଛ ନଭସ୍ଥଳ,
ପ୍ରବଳ ମାରୁତେ ଉଡ଼ିଲା କ ସତେ
ଗୈରିକ ରେଣୁ-ପଟଳ । ୫ ।

ଦୂର ଦିଗ୍‌ବଳୟେ          ପୁଷ୍ପିତ ହେଲା କି
ସହସା ପଲାଶ ବନ ?
ଶ୍ୟାମରଙ୍ଗ ତୋଳି          କି ଅବା ଲୋହିତ
ସିନ୍ଧୁ କରିଲା ନର୍ତ୍ତନ ? ୬ ।
ସେ ଅରୁଣ ଜଳେ          ନାନାବର୍ଣ୍ଣୋଜ୍ଜ୍ୱଳ
ବୋଇତ ଭାସିଲା ପରି
ବିବିଧ ଆକୃତି          ଚଳ ଘନପନ୍ତି
ଲାଗିଲେ ଧୀରେ ସଞ୍ଚରି । ୭ ।
ବର୍ତ୍ତୁଳ ମଞ୍ଜୁଳ          ମିହିର ପରିଧି
ଜକ ଜକ ତହିଁ ଦିଶେ,
ସନ୍ଧ୍ୟା ସାଧବାଣୀ—          ଅର୍ଚ୍ଚିତ ସୁପୁଷ୍ପ
ସିନ୍ଦୂରମଣ୍ଡଳ କି ସେ ? ୮ ।
ଦଳା ସିନ୍ଦୂରର          ସାରଘାଗ ସଙ୍ଗେ
ସୁଢ଼ଳ ଗୋଲ ମିହିରେ,
ତୁଳନା ଲଭନ୍ତା          ସୂର୍ଯ୍ୟମୁଖୀ ଏକା
ବୋଲି ହେଲେ ବର୍ଣ୍ଣିମାରେ । ୯ ।

---

( ୨୭ )

## ଉତ୍କଳ ସନ୍ତାନ

( ସ୍ୱର୍ଗତ ଦେଶପ୍ରାଣ ମଧୁସୂଦନ )

ତୁ ଯବ ବୋଲାଉ ଉତ୍କଳ ସନ୍ତାନ
ତେବେ କପାଁ ତୁହି ଧୀରୁ !
ତୋହର ଜନନୀ ବେଦନ କରିଲେ
କନ୍ଦିବାକୁ କପାଁ ଡରୁ ? ୧ ।
ତୋ ପୂର୍ବ ପୁରୁଷେ ଜୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ,
ତାଙ୍କର ଔରସେ ଜନ୍ମ ହୋଇ ତୁହି
କେଉଁ ଗୁଣେ ତାଙ୍କୁ ସରି ? ୨ ।
ତୁ ମନେ ଭାବୁଛୁ ତୋଷାମୋଦ କରି
ବଢ଼ାଇବୁ ଜାତି ମାନ,
ତୋଷାମୋଦଆର କୁକୁର ପ୍ରକୃତି
ଅଇଁଠାପତ୍ରରେ ଧ୍ୟାନ । ୩ ।
ତୋଷାମୋଦକାରୀ କ୍ଷିପ୍ତ ଶ୍ୱାନ ପରି
ସହଜେ ଚିହ୍ନା ନ ଯାଏ,
ଲୁଚିଥାଇ ଧରି ଗୋଡ଼ ଘୁଞ୍ଚୁ ଘୁଞ୍ଚୁ
ବିଷ ଲେପି ଦେଇଥାଏ । ୪ ।
ତୋଷାମୋଦ ଅଟେ ଅନ୍ଧାର ଗୋହିରି
ସ୍ୱାର୍ଥ ତହିଁ ଲୁଚି ବସେ,
ସରଳ ପଥିକ ବାଟରେ ଭେଟିଲେ
ଅକାତରେ ତାଙ୍କୁ ନାଶେ । ୫ ।
ଜାତିର ଉନ୍ନତି ହେବ କି ରେ ଭାଇ
ସ୍ୱାର୍ଥକୁ ଜଗତ ମଣି ?

ଗୋଦର ଗୋଡ଼ରେ ମାଉଁସ ଲାଗିଲେ
ଦେହର କି ଶୁଭ ଗଣି ? ୭ ।

ଜାତିର ଉନ୍ନତି ସେ କାହିଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ,

ଶାଗୁଣା ବିଲୁଆ ରକ୍ଷକ ହେଲେ
ଶବ କି ପାଇବ ପ୍ରାଣ ? ୭ ।

ଜାତି-ନନ୍ଦଘୋଷ ଚଳିବ କି ଧାଇଁ,
ସ୍ୱାର୍ଥକୁ ସାରଥି କଲେ,

ଟାଣେ କି ରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା-ମୁହେଁ ବନ୍ଧା ଥିଲେ ? ୮ ।

ସ୍ୱାର୍ଥର ବନିତା ଅଟେ ତୋଷାମୋଦ
ଭଣ୍ଡ ମିଥ୍ୟା ତାଙ୍କ ପୁଅ

ରାଜ୍ୟରେ ବିପ୍ଲବ ନିଶ୍ଚୟ ଘଟିବ
ଏମାନେ ହେଲେ ଏକଥ । ୯ ।

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ,

ପୂରୁବ ଗୌରବ ପୂରୁବ ସାହସ
ପଡ଼ିବ କି କେବେ ମନେ ? ୧୦ ।

ତୋହର ଜନନୀ ବୀରପ୍ରସବିନୀ
ଧୂଳିରେ ପଡ଼ିଛି ଦେଖ,

ଜନ-ସମାଜରେ ଏ ମହୀ ମଧ୍ୟରେ
କପଟ ଦେଖାଉ ମୁଖ ? ୧୧ ।

ତୋ ପୂର୍ବ ପୁରୁଷ ସ୍ୱର୍ଗଧାମେ ଥାଇ
ଭୋଗୁଛନ୍ତି ମନସ୍ତାପ,

ତାଙ୍କର ଜୀବନ କରି ବିସ୍ମରଣ
କରୁଛୁ ତୁ ମହାପାପ । ୧୨ ।

## ଆଶ୍ରମେ ପ୍ରଭାତ

( ସ୍ୱର୍ଗତ ଗଙ୍ଗାଧର ମେହେରଙ୍କ ତପସ୍ୱିନୀ କାବ୍ୟରୁ )

( ସୀତା ସ୍ତୋତ୍ର )

ମଙ୍ଗଳେ ଅଇଲା ଉଷା ବିକଚ-ରାଜୀବ-ଭୂଷା
ଜାନକୀ ଦର୍ଶନ ତୃଷା ହୃଦୟେ ବାନ୍ଧି,
କର-ପଲ୍ଲବେ ନୀହାର— ମୁକ୍ତା ଧରି ଉପହାର
ସତୀଙ୍କ ବାସ-ବାହାର ପ୍ରାଙ୍ଗଣେ ରହି,
କଳକଣ୍ଠ କଣ୍ଠେ କହିଲା,
"ଦରଶନ ଦିଅ ସତୀ, ରାତି ପାହିଲା ।" ୧ ।

ଅରୁଣ କିରଣେ ବାସ, କୁସୁମକାନ୍ତି ବିକାଶ
ପ୍ରଶାନ୍ତ ରୂପ, ବିଶ୍ୱାସ ଦିଅନ୍ତି ମନେ;
କେଉଁ ଯୋଗେଶ୍ୱରୀ ଆସି ମଧୁର ଭାଷେ ଆଶ୍ୱାସି
ଡାକୁଛନ୍ତି ଦୁଃଖରାଶି-ଉପଶମନେ,
ଦେବାପାଇଁ ନବଜୀବନ,
ସ୍ୱର୍ଗୁଁ କି ଓହ୍ଲାଇଛନ୍ତି ମର୍ତ୍ତ୍ୟଭୁବନ । ୨ ।

ସମୀର ସଙ୍ଗୀତ ଗାଏ, ଭ୍ରମର ବୀଣା ବଜାଏ
ସୁରଭି ନର୍ତ୍ତନେ ଥାଏ ଉଡ଼ା ନର୍ତ୍ତକେ,
କୁମ୍ଭାଟୁଆ ହୋଇ ଭାଟ ଆରମ୍ଭିଲା ସ୍ତବପାଠ
କଳିଙ୍ଗ ଅଇଲା ପାଟ-ମାଗଧ ବେଶେ,
ଲଳିତ ମଧୁରେ କହିଲା,
"ଉଠ ସତୀ-ରାଜ୍ୟ-ରାଣୀ ! ରାତି ପାହିଲା" । ୩ ।

ମୁନି-ମୁଖ-ବେଦସ୍ୱନ ପୂର୍ଣ୍ଣ କଲା ଶ୍ୟାମବନ

ଉଠିଲା ଭେଦି ଗଗନ ଉଚ୍ଚ ଓଁକାର,

ବୈକୁଣ୍ଠେ ଦେଇ ତୃପତି ଅନନ୍ତ ଶ୍ରୁତିକ ଗତି

ବହିଲା କି ସରସ୍ୱତୀ-ବୀଣା-ଝଙ୍କାର,

ବେଳୁ ବେଳ ବନ ଉଜ୍ଜ୍ୱଳ

ମନ୍ତ୍ରବଳେ ଯେହ୍ନେ ବଢ଼ି ଆସିଲା ବଳ । ୪ ।

ଏକାଳେ ବ୍ରହ୍ମଚାରିଣୀ ଅନୁକମ୍ପା ତପସ୍ୱିନୀ

ଆସି ଜନକନନ୍ଦିନୀ ପାଶେ ଗମ୍ଭୀରେ

ବୋଇଲେ, "ଉଠ ବୈଦେହି ! ଉଷା ସୁକୁମାର-ଦେହୀ

ଆସିଛି ଦର୍ଶନ ଦେଇ ତୋହର ବଧିରେ ;

ତମସା ରହିଛି ଅନାଇଁ

କୋଳ କରି ଥରେ ସୁଖ ଲଭିବା ପାଇଁ" । ୫ ।

ପଦ୍ମିନୀ-ହ୍ରଦ-ଶିଶିର— ବନ୍ଧୁରେ ଖରି ରଶ୍ମିର

ପ୍ରତିବିମ୍ବ ପରି ଖାରସାର ମୂରତି;

ଶୋକ-ଜର୍ଜ୍ଜରିତ ଚିତ୍ତ— ଫଳକେ କରି ଚିତ୍ରିତ

ହେଲେ ଆସନୁ ଉତ୍ଥିତ ଜାନକୀ ସତୀ,

ନମି ଅନୁକମ୍ପା-ପଦ୍ମରେ,

ବନ୍ଦିଲେ ଉଷାର ପଦ ସବିନୟରେ । ୬ ।

ବୋଇଲେ ତାକୁ ପ୍ରଶଂସି "ତୁମ୍ଭେ ତମିର-ଧ୍ୱଂସୀ

ରବି-ଆଗମନ-ଶଂସୀ ହୁଅ ସଂସାରେ,

ତୁମ୍ଭ କୋମଳ ଚରଣ କରେ ଜ୍ୟୋତି ଆହରଣ

ତହିଁ ଯାଉଛି ଶରଣ ଦୃଢ଼ ଆଶାରେ,

ଶୁଭ-ସଉରଭ ରସିକେ

ଶୁଭ ସମ୍ପାଦିନୀ ହୁଅ ରଘୁବଂଶିକେ ।" ୭ ।

ଉତ୍ସୁକ ହୃଦୟେ ରାଜି— ଶେଷରେ ଆଶ୍ରମଧାରୀ
ତମସା ନିର୍ମଳଗାମୀ ପବିତ୍ର-ଧାରା,
ପ୍ରାଙ୍ଗଣେ କୁସୁମ ବଞ୍ଚ ସୁବାସିତ ନୀର ସିଞ୍ଚ
ମଙ୍ଗଳପ୍ରଦୀପ ରଚି ପ୍ରଭାଷ୍ଟି-ତାରା
ମୁହୁର୍ମୁହୁଃ ମୀନ ନୟନେ,
ଚାହିଁଥିଲା ସୀତା ସତୀ ଶୁଭାଗମନେ । ୮ ।

ଉଟଜ-ତାପସ-କନ୍ୟା— ଗଣିଙ୍କ ଆଦର ବନ୍ୟା
ପ୍ଲାବନେ ଜଗତ ଧନ୍ୟା ସତୀରତନ,
ବାହାର ଅବଗାହନେ ଅନୁକମ୍ପାଙ୍କ ଗହନେ
ତମସା-ଧାର ବନ୍ଧନେ କଲେ ଗମନ,
ସତୀଙ୍କି ତମସା ଅଙ୍କରେ
ଧେନ ସ୍ନେହେ ଆଲିଙ୍ଗିଲା ତରଙ୍ଗ କରେ । ୯ ।

ଅମୃତ ମଧୁର ସ୍ୱରେ, ଭାଷିଲା ପଣତୋଷରେ
"ମାଆ ଗୋ, ମୋ ମାନସରେ ନ ଥିଲା ଆଶା,
କରିବ ଅଙ୍କେ ବିହାର ରାଜଲକ୍ଷ୍ମୀ-ହୃଦ-ହାର
ସୀତା କରି ପରିହାର ଭୋଗ-ପିପାସା,
ଭାଗ୍ୟବତୀ ମୋତେ ସଂସାରେ
ବୋଲିବେ ତୋ ଯୋଗୁଁ ଏକା ପରଶଂସାରେ । ୧୦ ।

ବନେ ବନେ ଭ୍ରମି ଭ୍ରମି ଗଣ୍ଡ-କୁହୁକେ ନ ଭ୍ରମି
ବନ୍ଧୁ ବାଧା ଅତିକ୍ରମି ସ୍ୱଚ୍ଛ ଜୀବନେ,
ଅନ୍ଧାର ଦୁଃଖ ନ ଗଣି ଆଲୋକ ସୁଖ ନ ମଣି
ଚାଲିଛି ଦୂର ସରଣୀ ନତବଦନେ;
ଜନମ କରୁଛି ମଙ୍ଗଳ,
ତୋପୂଦାନେ ତୋଡି ଖରବାସୀ ସକଳ । ୧୧ ।

ମନ୍ଦାକିନୀ, ଗୋଦାବରୀ ସେ ସବୁ ଗୁଣେ ମୋ ସରି
ତଥାପି ବର୍ଦ୍ଧନ କରିଛନ୍ତି ଗୌରବ,
ଲଭି ତୋ ପବିତ୍ର ପଦ— ଚନ୍ଦ୍ର ଅକ୍ଷୟ ସମ୍ପଦ
ଦିବ୍ୟପଦପଦପ୍ରଦ ଅଙ୍ଗ ସୌରଭ;
ତାହା ଥିଲା ମୋର ବାଞ୍ଛିତ ।
ତଦବଧିବେ ହେଉଥିଲି ମନେ ଲାଞ୍ଛିତ ।୧୨।

କରିଥିଲି ଶୁଭକର୍ମ ବୋଲି ଆଣି ଦେଲା ଧର୍ମ
ସମୟେ ତୋତେ ମୋ ମର୍ମ ବାସନା ଜାଣି,
ପାଇଛୁ ଦୁର୍ଲ୍ଲଭ ଧନ କରିବି ତୃପ୍ତି ସାଧନ
ନିତ୍ୟ କରି ସମ୍ବୋଧନ କୋଳକୁ ଆଣି,
ଅଙ୍ଗ ପରିମଳ ତୋହର
ହେବ ମୋର ଜୀବନର କଳୁଷ-ହର ।୧୩।

ମୋ କୋଳେ କେଳି-ଚପଳ ସାରସ-ମରାଳଦଳ
କୋକଯୁଗଳେ ଯୁଗଳ ବକ-ପଙ୍କତି
ତୋ ପୁଣ୍ୟମୟ ଶରୀର— କ୍ଷାଳନେ ପୂତ ମୋ ନୀର
ପାନେ ବଞ୍ଚିଥିବେ ଚିରଦିନ ମୋ କତି,
କଳନାଦ-ଛଳେ ତୋ ଯଶ
ଗାଇ ମୋ ଶ୍ରୁତିକି ତୋଷୁଥିବେ ଅଜସ୍ର ।୧୪।

ପତିବ୍ରତା ଅର୍ଚ୍ଚେ ଲାଗି ପବିତ୍ର ହେବାର ଲାଗି
ବ୍ରତତି-ବାସ-ବିରାଗୀ ପ୍ରସୂନମାନ,
ଦୂରୁଁ ଦୂରୁଁ ଝାସି ଝାସି ଧାଇଁଥିବେ ଭାସି ଭାସି
ଭ୍ରମୁଥିବେ ଆସି ଆସି ତୋ ସନ୍ନିଧାନ,
ସ୍ନାନ ସମୟେ ମୋ ପୟୁରେ—
ଦୟାମୟି ! ନ ପେଲିବୁ ତାଙ୍କୁ ପୟରେ ।୧୫।

"ମୋ କୂଳେ ଗୁଳ୍ମ ଚରଣ — କରିବୁ ମା ବିଚରଣ
ବ୍ୟପଦେଶେ ବିଚରଣ ଅମର କାନ୍ତ,
ତା ଲଭି ବନ ପାଦପ— ସଜ ହୋଇ ଦପ ଦପ
ବଢ଼ିବେ ଅମର ଦର୍ପ ବଢ଼ିବେ ଶାନ୍ତ;
ପଲ୍ଲବେ ପାଟଳ ଶ୍ୟାମଳ;
ଛୁଟିର ଛୁଟି ରହିବ ଚିର ନିର୍ମଳ ।" ୧୭ ।

× × × × ×

---

## କ୍ଷମା*

(ସ୍ୱର୍ଗତ ରାୟସାହେବ ନନ୍ଦକିଶୋର ବଳ, ବି.ଏ. ଙ୍କ ଶର୍ମିଷ୍ଠା କାବ୍ୟରୁ)

ଯେହ୍ନ କ୍ଷମା ଗୁଣେ  ପର ତିରସ୍କାର
ଉପେକ୍ଷା କରଇ ଭବେ,
ଏହି ଚରାଚର  ବ୍ରହ୍ମାଣ୍ଡ ଆଯୁତ
ହୁଅଇ ତାହାର ଲବେ ।
ଅଶ୍ୱରଶ୍ମି ଗ୍ରାହୀ  ସାଧୁ ସମାଜରେ
ପ୍ରକୃତ ସାରଥି ନୁହେ,
ଅଶ୍ୱସମ ଉଠେ—  ଜାତ କ୍ରୋଧେ ଜଣେ
ଯେହ୍ନ ସେ ସାରଥି ହୁଏ ।
ପ୍ରବଳ କ୍ରୋଧାଗ୍ନି  ପରେ କ୍ଷମାବାରି
ସେଚନ କରି ସେ ପାରେ,
ଜୟୀ ହୁଏ ସେହି  ସ୍ଥାବର ଜଙ୍ଗମ-
ପୂର୍ଣ୍ଣ ଏହି ବସୁଧାରେ ।
ପର କୁକର୍ମରେ  ପର ସିନା ଦୋଷୀ
ଭୁଞ୍ଜିବ ସେ ପାପଫଳ,
ତାହା ଅପରାଧେ  ଚିତ୍ତ ଅନ୍ତର କାହା
ହେବ କୋପେ ଜରଜର ?
ଭୁଜଙ୍ଗ ନିର୍ମୋକ  ତେଜିଲା ପରାଏ
କରେ ଯେ କ୍ରୋଧ ବର୍ଜନ,
ଜିତେନ୍ଦ୍ରିୟ ବୋଲି  ସେହି ମହାଜନେ
ପୂଜନ୍ତି ଜଗତ ଜନ ।

---

* ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ପ୍ରତି ଉପଦେଶ ।

ଶତ ବର୍ଷ ଯଜ୍ଞ ପ୍ରତିମା ପୂଜାରେ
ଯେ ଧର୍ମ ନୁହେ ସଞ୍ଚିତ,
କାହା ପ୍ରତି କେବେ କୁପିତ ନୋହିଲେ
ହୁଏ ସେ ପୁଣ୍ୟ ଅର୍ଜିତ ।

ବିଜ୍ଞଜନେ କେବେଁ ନୁହନ୍ତି ହୃଅନ୍ତି
କ୍ଷମା, ଧୈର୍ଯ୍ୟ ବିଭୂଷିତ,
ତିତିକ୍ଷା ସ୍ୱର୍ଗୀୟ, କ୍ରୋଧ ନାରକୀୟ,
ସ୍ଥିର କର ସୁଦ୍ଧା ଚିତ୍ତ ।

କ୍ଷମା କଲେ ଝିଅ ! କ୍ଷମା ତ ମିଳଇ,
କ୍ଷମାର ନ ମିଳେ ଅନ୍ତ,
କ୍ଷମାର ଗ୍ରହୀତା କ୍ଷମାଦାତା ଦୁହେଁ
ଏ ଭୁବନେ ଭାଗ୍ୟବନ୍ତ ।

ଦିବ୍ୟଧାମୁଁ ସୁଧା— ତରଙ୍ଗିଣୀ ତୁଲ୍ୟ
ଓହ୍ଲାଇ ଆସିଛି କ୍ଷମା,
ପ୍ରାଣୀ ହିତକର ବାରିଦ ଜୀବନ—
ସୁନିର୍ମଳଧାରାସମା ।

ବଇକୁଣ୍ଠ ଗଙ୍ଗା— ଯାରୁ କୈବଲ୍ୟ କି
ତ୍ରିଲୋକ ପଡ଼ନ୍ତି ତଳେ ?
ସ୍ୱର୍ଗୀୟ କରଇ ଏହି ଦିବ୍ୟ କ୍ଷମା
ପାର୍ଥିବ ଶରୀର ବଳେ ।

ସିଂହାସନାରୂଢ଼— ନୃପତି-ମୁକୁଟ-
ମଣି ମହାମୂଲ୍ୟ ଲଭେ,
ନୃପ-ହୃଦ-ବେଦୀ ଅଭିଷିକ୍ତା କ୍ଷମା
ଅଟଇ ଅମୂଲ୍ୟ ଭବେ ।

ରାଜଦଣ୍ଡ ସିନା ଉପୁଜାଏ ଶାନ୍ତି,
କ୍ଷମା ଭକତି କାରଣ,
କ୍ଷମାମୟ ହରି ଅନନ୍ତ କ୍ଷମାରେ
ପାଳନ୍ତି ବିଶ୍ୱଭୁବନ ।
ନ୍ୟାୟେ ପାପୀ ନର, ନ ପାଇବେ ମୁକ୍ତି
କ୍ଷମା ମୁକ୍ତିଦାନେ କ୍ଷମ,
ପାର୍ଥିବ ଶକତି କ୍ଷମା ସୁସଂଯତ
ହୁଏ ଦିବ୍ୟଶକ୍ତି ସମ ।
ଦେଇଥିଲେ କ୍ଷମା, ମିଳେ ତା ଅଧିକ
ବୁଣିଥିଲେ ପାଇ ଫଳେ,
ଅପୂର୍ଣ୍ଣ ଏକାକୀ ଜୀବାତ୍ମା ତରଇ
ମୃତ୍ୟୁନଦୀ କ୍ଷମାବଳେ ।
ଦୋଷ ପିମ୍ପୁଡ଼ିକା— ଦଂଶନ ପରସ୍ପେ
ଘଟିଥାଏ ଅନୁକ୍ଷଣ,
ଏକକୁ ମାଇଲେ ଇତର ଦଂଶଇ
ଜୀବ ବଧ ଅକାରଣ ।
ଏକ ଅନ୍ତେ ଆସେ, ଆନ ପିମ୍ପୁଡ଼ିକା
ମାରିବା ହୁଏ ବିଫଳ,
ପ୍ରତିହିଂସାବେଗେ ନ ହୋଇ ବିକୃତ
ହୃଦୟ କର ନିର୍ମଳ ।
କହିବା ଲୋକ ତ ମହତ ନୁହଇ
ମହତ ସହିବା ଜନ,
ସହିଷ୍ଣୁତା ହୀନ ବାଳକ ବାଳିକା
ହୁଅନ୍ତି କ୍ରୋଧେ ଅଜ୍ଞାନ ।

## ପ୍ରଭାତ ଅବକାଶ

(ସ୍ୱର୍ଗତ ରାୟସାହେବ ନନ୍ଦକିଶୋର ବଳ, ବି. ଏ.—ନିର୍ଝରିଣୀରୁ)

୧

ପାହି ଆସୁଅଛି ଧୀରେ ସୁପ୍ତା ନିଶୀଥିନୀ,
ଶୁଭୁଅଛି ଦୂରଦେଶୁ ବିଷାଦ-ରାଗିଣୀ
ଦାରୁଣ ବିଷାଦ ଚିତ୍ତ                କରେ ମୋର ଆନ୍ଦୋଳିତ
କାହିଁ କିବା ହଜିଅଛି ନାହିଁ ପ୍ରାପ୍ତି-ଆଶା,
ମେଣ୍ଟିବାର ନୁହେଁ ମୋର ଏ ପ୍ରାଣପିପାସା ।

୨

ସୁଲୁ ସୁଲୁ ବହୁଅଛି ପ୍ରଭାତ ପବନ
ବିଟପିଶାଖାରେ କରି ପତ୍ର ସଞ୍ଚାଳନ,
ଫାଟିଛି ନଭେ ସିନ୍ଦୂର,                ବୁଡ଼ିଅଛି କୁଆ ତାର
ଅନନ୍ତ ଗଗନପଥେ ଦେବକନ୍ୟା ଉଷା
ପିନ୍ଧି ଚାଲି ଯାଉଅଛି ଅପରୂପ ଭୂଷା ।

୩

ଅଜ୍ଞାତ ମୁହୂର୍ତ୍ତରେ ଚିତ୍ତ ହୁଏ ବିମୋହିତ,
କାହିଁ କିଏ ଗାଏ ବସି ପ୍ରଭାତ ସଙ୍ଗୀତ ।
କି ଥିଲି କି ହୋଇଅଛି,                ଭବିତବ୍ୟେ କିବା ଅଛି
ଜନ୍ମ ମୃତ୍ୟୁ କରୁଅଛି ପଥେ ପଥ ମନା,
ପ୍ରତିପଦେ ହତଚେଷ୍ଟା ପଥିକ କଳ୍ପନା ।

୪

ଧ୍ୱାନ୍ତ-ପ୍ରଭା-ସମାବେଶେ ବିଭ୍ରାନ୍ତ ସମୟ,
ଅବିଶ୍ୱାସ ବିଶ୍ୱାସର ମିଳନେ ସଂଶୟ,
ଭାଙ୍ଗିଛି ସୁଖସ୍ୱପନ    ଆସେ କଠୋର ଜୀବନ;
ଆଶ୍ରୟ-ତରୁଶାଖାରେ ସୁଷୁପ୍ତା ପକ୍ଷିଣୀ,
ଶୁଭୁଅଛି ସୁଦୂରସ୍ଥ ବିଭାସ-ରାଗିଣୀ ।

୫

ଶୁଷ୍କପ୍ରାୟ ପୁଣ୍ୟତୋୟା ବନ ପୁଷ୍କରିଣୀ;
ତଟ ବିଟପିରେ କାନ୍ଦେ ଚକୋର-ଗୃହିଣୀ
ଆସଇ ନବ ପ୍ରଭାତ    ଅସ୍ତମିତ ନିଶାନାଥ
ସମାଗମକାଳ ଅଟେ ସୁଖର ସମୟ,
ବିଦାୟ ଲୋତକ ଆହା କି ବିଷାଦମୟ ।

୬

ଦୁଃଖ ସୁଖ ମିଶାମିଶି ଏ ବିଶ୍ୱ ସଂସାରେ,
କିଏ କେଉଁଠାରେ ବେଶୀ ଭାଗ୍ୟ ଅନୁସାରେ,
ଦେଖ ଏ ପ୍ରକୃତିଚିତ୍ର    କି ଉଦାର କି ବିଚିତ୍ର
କେହି ଦେଖେ ଏଥି ଘୋର ବିଷାଦର ରୂପ,
କେହି ବା ଦେଖୁଛି ପୁଣି ହର୍ଷ ଅପରୂପ ।

୭

ମୁହିଁ ଘୋର କଳଙ୍କୀରେ ତେଣୁ ଏ ପ୍ରକୃତି
ଦେଖାଏଁ ସତତ ମୋତେ ବିଷାଦ-ମୂରତି,
ବହିଲା ପ୍ରଭାତ ବାୟୁ,    ତୁଟିଲା ନିଶାର ଆୟୁ
ନବ ଅତିଥି ଆଗମେ ଅଛି ଯେବେ ସୁଖ,
ଗଲା ପ୍ରିୟ ପୁରାତନ ଏ ବିଷମ ଦୁଃଖ ।

୮

ନାଚଇ ବସନ୍ତ ପୁଣି ହସଇ ଶରତ,
ବରଷା-ବିଷାଦେ କିନ୍ତୁ ମୋ ହୃଦୟ ନତ,
ସୁନ୍ଦରୀ ବାସନ୍ତୀ ଉଷା ଶାରଦଯାମିନୀ-ଭୂଷା
ବରଷା-ନିଶୀଥ କିନ୍ତୁ ମୋ ହୃଦୟନିଧି,
ହୁଅଇ ଉଦ୍‌ବେଳ ଯେବେ ବିଷାଦ ବାରିଧି ।

୯

ହସଇ ବିଶ୍ୱତ ସହ ସରୋଜ ମଳୟ,
ଖେଳଇ ବାସର ଚିର-କୋଳାହଳମୟ,
ମଧ୍ୟାହ୍ନ ଗଗନେ ରବି ବିସ୍ତାରେ ଦାରୁଣ ଛବି
ମୋ ମନମୋହନ କିନ୍ତୁ ପ୍ରଦୋଷ ସମୟ;
ଗାମ୍ଭୀର୍ଯ୍ୟବିଷାଦ ଯେବେ ଘୋଟଇ ହୃଦୟ ।

୧୦

ହେମଗୌର ତୋର ତନୁ ଟହ ଟହ ହସେ
ତରଳ ଅପାଙ୍ଗେ ସ୍ଫୁରୁ ନବୀନ ବୟସେ,
ଚଞ୍ଚଳ ପଦକ୍ଷେପଣେ ଅଳଙ୍କାର ରଣଝଣେ;
ବିଷାଦର ଛାୟା ଯେଉଁ ଯୌବନେ ଫଳିତ
ସେ ଗମ୍ଭୀର ମୂର୍ତ୍ତି କିନ୍ତୁ ଆକର୍ଷେ ମୋ ଚିତ୍ତ ।

୧୧

ବିଷାଦ ହରଷ ନୁହେ ଜୀବନ ଉଦ୍ଦେଶ୍ୟ,
ଏ ଜଗତି ଦ୍ୱନ୍ଦ୍ୱଙ୍କର ଶୁଭ ସମାବେଶ,
ବୁଦ୍ଧି-ଇଚ୍ଛା ଅନୁଭବେ ନିୟୋଜି ଏ ପୁଣ୍ୟ ଭବେ,
ଲଭିବ ନର ଜ୍ଞାନ-କର୍ମ-ପ୍ରୀତିର ଚରଣ,
ବିଶ୍ୱବିଧାତାର ଏହା ବିଚିତ୍ର ବିଧାନ ।

୧୨

ବିଷାଦ-ସଙ୍ଗୀତ କମ୍ପା ଗାଅ ତେବେ କବି !
ଶୁଣାଅ ଆଶାର ଗୀତ, ଚିର କର୍ମ-ନବ,
ଯାଉ ଶ୍ରାନ୍ତ ପୁରାତନ                ଆସୁ ଆଶାପ୍ଲୀ ନୂତନ
ଆସ ହେ ନବୀନ କବି ! ଗାଅ ନବ ଗୀତ,
ଆଶାର ସଙ୍ଗୀତ ଗାଇ ହର ମୋର ଚିତ୍ତ ।

---

# ବାଣୀ ଆବାହନ

( ସ୍ୱର୍ଗତ କବିବର ଚନ୍ଦ୍ରମଣି ମହାନ୍ତି )

( ରାଗ—ଚକ୍ରକେଳି )

ଆସ ବାଣି ! ବୀଣାପାଣି ଖିଳ-ବାଣୀ-ଈଶ୍ୱରୀଣୀ
'କାବ୍ୟ-କଳା-ଠାକୁରାଣୀ କବିଜନମା,
ତବ ଆରାଧନାପାଇଁ ଆଶାବୋଳା ନେଇ ଗ୍ରହି—
ଅଛନ୍ତି ବାସନ୍ତୀ ଲକ୍ଷ୍ମୀ ଫୁଲବରଣୀ;
ହର୍ଷେ ଉଭା ବନସୁନ୍ଦରୀ
ସ୍ୱଚ୍ଛ ଫୁଲ-ସିଂହାସନ ବକ୍ଷରେ ଧରି । ୧ ।
ମଳୟ ମାରୁତ-କରେ ଧରି ପଲ୍ଲବ-ଚାମରେ
ଅଛି ତବ ଅପେକ୍ଷାରେ ଖଞ୍ଜଣୀ ଆଶେ,
ଫୁଙ୍କେ ଶୁଭ ଶଙ୍ଖ ଅଳି ମହାଭାବେ ଢଳ ଢଳ
ଗାଏ ପିକ 'ଆଗମନୀ' କୁଞ୍ଜ-ଆବାସେ;
ଫେଇ ଚୂତ ପର୍ଣ୍ଣସମ୍ପୁଟ
ଟେକିଅଛି ଭେଟିବାକୁ ସ୍ୱର୍ଣ୍ଣମୁକୁଟ । ୨ ।
ଆସ ଦେବି, ଆସ ପ୍ରାଣେ ଆସ ମୋ ଅନ୍ତରେ ଧାନେ,
ମଙ୍ଗଳ ଆକାଂକ୍ଷା ହୃଦେ ଆଣ ସତ୍ୱର,
ଦିଅ ସାଧନାରେ ବଳ ଉତ୍ସାହ ଶକ୍ତି ପ୍ରବଳ
କର ଆତ୍ମା ସୁନିର୍ମଳ ସତ୍ୟ ସୁନ୍ଦର,
ପଦସେବା ଯୋଗ୍ୟତା ତବ
ପ୍ରଦାନ କରୋ ଦେବି ! ଭାଗ୍ୟେ ପୁଣ୍ୟ-ବିଭବ । ୩ ।

ଆଶୀର୍ବାଦ-ଜ୍ୟୋତିର୍ଜାଳେ ଧୂଅ ଉତ୍କଳ କପାଳେ,
ମହିମା-ମୟୂଖେ ଉଠୁ ହସି ସେ ଖରେ,
ସ୍ୱର୍ଣ୍ଣମୟୀ ଲେଖନୀରେ ‘ଲେଖିଦିଅ ତାହା ଶିରେ
“ନବଉତ୍କଳପ୍ରିୟା” ବୋଲି ସ୍ୱର୍ଣ୍ଣ-ଅକ୍ଷରେ;
ଯେବେ ତାର ଭକ୍ତ-ଆରତି
ଗଭୀର ଗୋପନ ବ୍ୟଥା ହର ଭାରତି । ୪ ।

---

# ଆବାହନ

(ସ୍ୱର୍ଗତ କୁନ୍ତଳାକୁମାରୀ ସାବତ, ଏଲ୍. ଏମ୍. ପି—ଅଞ୍ଜଳିରୁ)

ଆସ ପ୍ରଭୁ ଦୟାମୟ ! ଢାଳ କୃପା-ବାରି,
ଗାଇବ ସତତ ମୁଦେ ନାମଟି ତୁମ୍ଭର,
ମଧୁମୟ ସୁଲଳିତ ତାନେ ମନୋହାରୀ,
ପବିତ୍ର, ସୁନ୍ଦର, ସୁଖ, ଶାନ୍ତିର ଆକର ।

ଜନ୍ମଭୂମି ଭାରତୀୟ ବୀଣାତନ୍ତ୍ରୀ ତାନେ,
ତୋଷିବ ସକଳ ହୃଦ ଅମୃତ ନିଃସ୍ୱନେ,
ଭକ୍ତିଭରେ ନଚାଇବେ ଲୋକ ସନମାନେ,
ସ୍ୱଦେଶ ଭାରତୀ ପ୍ରୀତ ସୁନ୍ଦର ସୁମନେ ।

ପଦ୍ୟ-ପୁଷ୍ପାଞ୍ଜଳି ଭରି ଦେବ ସେ ପୟରେ,
ଭକ୍ତି-ଅଶ୍ରୁ ସିଞ୍ଚା ଆହା ଲଳିତ ମଧୁର,
କ୍ଷୁଦ୍ର ହେଉ ଉପହାର, ଦେବ ତ ସାଦରେ
ହୃଦୟ ଉଚ୍ଛ୍ୱାସ ଶତ କରୁଣ-ବଧୁର ।

ଉତ୍କଳ ସାହିତ୍ୟାଳୟେ ତବ ଯଶୋଗୀତ,
ଉତ୍କଳ ଭାରତୀ ରମ୍ୟ, ପ୍ରୀତ ବୀଣା-ତାରେ;
ଅମୃତ ଝଙ୍କାରେ ସ୍ଫୁରି ମୋହୁ ସର୍ବଚିତ୍ତ,
ପରଶୁ ମରମସ୍ଥଳ ତୁମରି କୃପାରେ ।

ମାତୃଭାଷାଙ୍ଗେ ଜାଳ ତବ ଧର୍ମାଲୋକ,
ବିତରିବ ଯେତେହେଁ ତାର ମୟୂଖ ଉଜ୍ଜ୍ୱଳ,
ସେ ଆଲୋକେ ପାସୋରିଣ ଦୈନ୍ୟ, ଦୁଃଖ, ଶୋକ
ଫୁଟି ହସିବ ସହସ୍ର ହୃଦୟ-କମଳ ।

ତବ ଚରଣରାଜୀବ ସେବିବ ସତତ
କ୍ଷୁଦ୍ର ମମ ମାତୃଭାଷା-ଫୁଲ-ଅଞ୍ଜଳିରେ;
କ୍ଷୁଦ୍ର ହୃଦେଁ ସେହି ଆହା, ପବିତ୍ର, ମହତ;
ମୋର ଭାଷା ବଢ଼ି ସିନା ମୋହର କଣ୍ଠରେ ।

ଜେ ଭାବୁ କାହାକୁ ମାତ, ସେ ମୋର ଅମୃତ,
ରସନା ଯା' ଉଚ୍ଚାରଣେ ଶିଖିଲା ପ୍ରଥମ,
କେ ବୋଲୁ ନୀରସ, ରୁକ୍ଷ, ତଥାପି ସେ ପୂତ,
ଭାଷା-ଫୁଲବ୍ରଜେ ସେ ତ ମନ୍ଦାର ସୁମନ ।

ଶିଖାଅ ସେବିବ ଯେହ୍ନେ ଦେଇ ସର୍ବଶକ୍ତି,
ମାତୃଭାଷା-ଅର୍ଘ୍ୟେ ତବ ଶ୍ରୀପଦନଳିନ,
ତାକ ମୋର ଜ୍ଞାନ, ବିଦ୍ୟା, ବୁଦ୍ଧି, ପ୍ରୀତି, ଭକ୍ତି,
ଦିନୁ ଦିନ ହେଉଥିବ ଉନ୍ନତ-ମହିମ ।

କର ଆଶୀର୍ବାଦ ପ୍ରଭୁ, ସେହି ଭାଷାପରେ,
ହଉ ସେ ଆଦରଣୀୟ, ବରେଣ୍ୟ, ସୁନ୍ଦର,
ଥାଉ ଶତ ଶତ ଭାଷା ଦେଶ ବିଦେଶରେ,
ମଣେ ଯେହ୍ନେ ଏକା ତାହା ସମ୍ପତ୍ତି ମୋହର ।

ସନ୍ତାନର ଦତ୍ତ କ୍ଷୁଦ୍ର ତୁଚ୍ଛ ଉପହାର
ଆଦରେ ଘେନ ହେ ତାତ, ତବ ବଡ଼ପଣେ,
କ୍ଷମ ଶତ ଅସଙ୍ଗତି ଦୋଷରାଶି ତାର,
ଅନ୍ତେ ସ୍ଥାନ ଲଭୁ ଯାନ ତୁମରି ଚରଣେ ।

# ମା

( ସ୍ୱର୍ଗତ କୁନ୍ତଳାକୁମାରୀ ସାବତ—ସ୍ଫୁଲିଙ୍ଗରୁ )

ଆଜ ଏକ କଣ୍ଠେ ମା ବୋଲି ଡାକ ହେ
ତେତିଶ କୋଟି ମାଆର ସନ୍ତାନ,
ମା ନାମ ମହିମା ଶକ୍ତିରେ ଉଠ
ଦୁର୍ବଳ ଯେତେ କମ୍ପମାନ,
ମା ନାମ ଗରିମା ଗିରି ହିମାଚଳେ
ଶତ ଶତାବ୍ଦୀର ଭୁଣ୍ଡାର ଉଜ୍ଜ୍ୱଳେ
ମାତୃସ୍ନେହ ଝରୀ
ଗଙ୍ଗା-ସିନ୍ଧୁ ଧାରୀ
ବ୍ରହ୍ମପୁତ୍ର ବହେ ଚଞ୍ଚଳ କଲ୍ଲୋଳେ,
ଉଠେ ମହାଗୀତ ବ୍ୟୋମେ ଜଳେ ସ୍ଥଳେ ।
ମା ନାମର ସୁପ୍ତ ଅନ୍ତରେ ଉଚ୍ଛଳେ,
ବିନ୍ଧ୍ୟାଦ୍ରି ସହ୍ୟାଦ୍ରି ମଳୟିର କୋଳେ
ରେବା ଗୋଦାବରୀ ଗାଆନ୍ତି ମଧୁରେ ।
ଶିରୀ ବୃନ୍ଦାବନେ ଚନ୍ଦନବନେ ବନ୍ଦ୍ରନାରୀପୁଣେ ମା ନାମର ମନ୍ତ୍ର—
ବାଜେ ହୃଦଯନ୍ତ୍ର ମଧୁର ନିକ୍ୱଣେ ।
କିଏ ସେ କୁମର ? ଭେଦ ନାହିଁ ଯାର ହୃଦ ଅଭ୍ୟନ୍ତର ।
ମା ନାମର ଭକ୍ତି;
କିଏ ସେ ଦୁହିତା ? ମା ନାମ ଶ୍ରବଣେ ନୁହେଁ ଯେ ମୋହିତା ?
ଭାରତର କୁଳେ କିଏ କୁଳାଙ୍ଗାର
ମା ନାମେ ନୟନେ ନାହିଁ ଯାର ଧାର,

'ମା ମୋର ଆମର ତ୍ରିଲୋକପାବନୀ ''
ଗାୟତ୍ରୀ, ସାବିତ୍ରୀ, ବିଶ୍ୱପ୍ରସବିନୀ,
ବେଦ ବେଦାନ୍ତର ଜନନୀ, ମୋହିନୀ,
ନିଖିଳ-ଅବନୀ-ଜ୍ଞାନ-ପ୍ରଦାୟିନୀ,
କାବ୍ୟ-କଳାଶିଳ୍ପ-ଲୀଳା-ବିଳାସିନୀ,
କୋଟି କୁଞ୍ଜବନ କୁସୁମମାଳିନୀ,
କୋଟି କଳ୍ପତରୁ-ବଲ୍ଲୀ ରସାଳିନୀ,
ମନୋଜ୍ଞ ମାନସ-ହେମ-ମୃଣାଳିନୀ ।

ମା ମୋର ଆମର ଜ୍ଞାନ-ବିଜ୍ଞାନର
ଆଦ୍ୟଲୀଳାଭୂମି,
ପବିତ୍ର ଓଁକାର ଝଙ୍କାର ଉଠିଲା ଯହିଁ ନଭ ଚୁମି ।
ବୁଡ଼ିଥିଲା ଯେବେ ବିରାଟ ଅବନୀ ଅଜ୍ଞାନତମିରେ,
ଉଜ୍ଜ୍ୱଳ ଥିଲା କେ ବିଦ୍ୟାଧରମ ହେମ ଦୀପ୍ତିରେ ?
ଆଜ ହେଉ ତାର, ହୀନ ଅଧୋଗତି
ଶୁଣି କି ତୁମର ନୁହଇ କରତି ?
ନାହିଁ କି ହେ ଉଷ୍ଣରକ୍ତ ଧମନୀରେ ?
ବ୍ୟଥିତ ନୁହଁ କି ମାତୃ ଆରତିରେ ?
ଉଠ ଉଠ ତେବେ ଉଠ ମୋର ଭାଇ,
ଆର୍ଯ୍ୟ ତେଜ ତବ ରକ୍ତେ ଯାଇ ନାହିଁ,
ମାତୃ ନାମ ମନ୍ତ୍ରେ
ଉଠ ହେ ଏକତ୍ରେ
ତେତିଶ କୋଟି ମାତୃ ସ୍ତବ ଗାଇ ।

---

# ବନ୍ଦୀର ସ୍ୱଦେଶ ଚିନ୍ତା

( ସ୍ୱର୍ଗତ ଗୋପବନ୍ଧୁ ଦାସ )

ବାହାରେ ବହଇ କେଡ଼େ ସୁଶୀତଳ
ମଧୁର ମଳୟ ମୃଦୁ ମରୁତ,
ନବ ମଲ୍ଲୀକଢ଼ୀ ମୃଦୁକ ହସଇ
ଭ୍ରମର ଦୋଳାଏ ପ୍ରେମେ ତା ବୃନ୍ତ ।
କବାଟ ଫାଙ୍କରେ ଗୁହ୍ନିଲେ ବାଙ୍କରେ
ଥରେ ଥରେ ଆସେ ଭୈରବ ପବନ,
ସେ କି ଗୁପ୍ତଚର ବାହାର ଖବର
ଦେଇ ଲୁଚି ଚାଲିଯାଏ ବହନ ।
ସେ ସ୍ନିଗ୍ଧ ପରଶେ ନିମିଷ ସମ୍ପର୍କେ
ତାପିତ ପ୍ରାଣ ମୋ ପୂରେ ପୁଲକେ,
କେତେ ସୁଖସ୍ମୃତି ଜାଗେ ଏ ଅନ୍ତରେ
କେତେ ସ୍ମୃତିଚିତ୍ର ନାଚେ ପଲକେ ।

× × × ×

ପଡ଼ିଯାଏ ମନେ ଘରକଥା ମନେ
ଅତିଥି ଆଦର ଦେବ-ଅର୍ଚ୍ଚନା,
କାରାଗାର କକ୍ଷେ କିପାଇଁ ଏ ବକ୍ଷେ
ଆଣିବି ଆଉ ସେ ବୃଥା ଭାବନା ।
ହେ ବସନ୍ତ ବାତ ମୋ ଦ୍ୱାରେ ଆଘାତ
କର ଭଲା ଆଜ ଥରେ ସଦୟେ,
ଦକ୍ଷିଣ ଦିଗର କହ ସମାଚାର
ସିଞ୍ଚ ଶାନ୍ତି-ସୁଧା ଷଣେ ହୃଦୟେ ।

ମୋର ପ୍ରିୟସ୍ଥଳୀ   କେତେ କଉତୁକ
କରିଥିବେ ତବ ଆସିବା ବାଟେ,
ଦେଇଥିବେ ପଗ୍‌ ·   କେତେ କ ବାରତା
ଶୁଣାଅ ମନ ମୋ ଅଛୁ ଉଚ୍ଚାଟେ ।
କରିଥିବ ଭେଟ   ମଞ୍ଜୁଷା ମୁକୁଟ
ମହେନ୍ଦ୍ର ଶଇଳ ସୁବାସ ଫୁଲ,
ତବ ସମାଗମେ   ନାଚିଥିବ ପ୍ରେମେ
ଦୋହଲାଇ ତରୁ-ଭୃଙ୍ଗସଙ୍କୁଳ ।
ରସନା ନୟନ   ନାସା ରସାୟନ
ସ୍ୱାଦ ଶୋଭା ଗନ୍ଧଭରା ଆଧାର,
ଗଞ୍ଜାମ ମଣ୍ଡନ   ସୁରମ୍ୟ "ଉଦ୍ୟାନ"
ଦେଇଥିବ କେତେ କ ଉପହାର ।
ଆମ୍ବ ରମ୍ଭା ବେଲ   ଲେମ୍ବୁ ନାରିକେଳ
ପଣସ ସପୁରି ଖଜୁରୀ ତାଲ,
ବଧିରକ୍ଷା ପାଇଁ   ଆସିଥିବ ଛୁଇଁ
"ଉଦ୍ୟାନ"ର ନାନା ଫଳ ରସାଳ ।
କୃଶୋଦରୀ ଋଷି-   କୁଲ୍ୟାକୁ ପରଶି
ଆସିଥିବ ଯେବେ ହେ ପବମାନ !
ଗିରିବାସୀଙ୍କର   ରାଗିଣୀ ମଧୁର
ଶୁଣିଥିବ ରମ୍ୟ ଲଳିତ ଗାନ !
ଆଲିଙ୍ଗନ ଆଶେ   ନବ ପଥ ପାଶେ
ଚିଲିକା ଆବେଗେ ଥିବ ଅନାଇଁ,
ମୁକ୍ତ ନୀଳକେଶୀ   ଶ୍ୟାମ-ଶୋଭାରାଶି
ଗିରିଶିରସ୍ଫୀତ ବକ୍ଷ ମେଲାଇ ।

ଚଞ୍ଚଳ ହିଲ୍ଲୋଳେ ସ୍ୱଚ୍ଛ ଗଣ୍ଡସ୍ଥଳେ
ଚୁମ୍ବିଥିବ ଯେବେ ଗାଢ଼େ ସମୀର,
ସୁନ୍ଦରୀ ସର୍ବାଙ୍ଗେ ଉଠିଥିବ ରଙ୍ଗେ
ଅପୂର୍ବ ଉଲ୍ଲାସ କମ୍ପାଇ ନୀର ।
ପୁଳିନ କାନନେ ସ୍ନିଗ୍ଧ ସନସନେ
ଖେଳି ଯାଉଥିବ ପ୍ରେମ-ଲହରୀ,
ହଲି ଯାଉଥିବ କେତେ କେତେ ନାବ
ଦେଖୁଥିବ ଖଣ୍ଡଦୂରେ ସୋଲଈ ।
ମାଛରଙ୍କା ହଂସ ଗଣ୍ଡ୍ରାଳ ସାରସ
ନାନା ଜାତି ଖଗ ଖଚିତ ମାଳ,
ଚିଲିକା ବକ୍ଷରେ ଦୋଳିଥିବ ଯଥା
ନୀଳମେଘେ ଧାଡ଼ି ଧାଡ଼ି ବକାଳ ।
ଫେଣ୍ଡ଼ ମୀନନେତ୍ର ଉଲଟାଇ ଗାତ୍ର
ଗୁହ୍ନିଁଲ୍ ବେଳକୁ ଚିଲିକା ପୁଣ,
ଶୈଳପ୍ରାନ୍ତଘାଟେ ସରମେ ଲୁଚନ୍ତେ
ଗୃଳଲ୍ଲ ବଢ଼ାଇ ଗତି ଦ୍ୱିଗୁଣ ।
ଆସିଥିବ ଉଡ଼ି ଭ୍ରମେ ପଥ ହୁଡ଼ି
ସିନ୍ଧୁସଇକତେ ଶ୍ରୀକ୍ଷେତ୍ରଧାମ,
ପୁଣ୍ୟ ନୀଳାଚଳେ ମହୋଦଧି ଜଳେ
ସ୍ନାନେ ହୋଇଥିବ ଶୁଚି ଆଗମ ।
ସଞ୍ଚର ସ୍ୱଚ୍ଛନ୍ଦେ ଭୃଙ୍ଗ ବାଲକୁନ୍ଦେ
ତାଳ ନଙ୍କୋଆମ୍ବ ଝୁମ୍ପା ଫନ୍ଦାରେ,
ନୀଳାଚଳପତି ପଦ୍ମରେ ପ୍ରଣତି
କରିଥିବ ପଶି ଦକ୍ଷିଣ ଦ୍ୱାରେ ।

ଶ୍ରୀପଦ ତୁଳସୀ ଶିରରେ ପରଶି
ଲଭିଥିବ ମହାମୋଦ ଅନ୍ତରେ,
ନୀଳଚକ୍ରଚୂଳେ ପ୍ରେମ-ଭକ୍ତିଭୋଳେ
ଦେଇଥିବ ନେତ ଉଡ଼ାଇ ଥରେ ।

ପୁଣ୍ୟ ଗନ୍ଧବହ କର ଅନୁଗ୍ରହ
କହ ପ୍ରିୟପୁଷ୍ପ ସୁସମାଚାର,
କନ୍ଦର ନିବାସୀ ପ୍ରଭୁ ବ୍ରହ୍ମଋଷି
କରୁଛନ୍ତି ଏବେ କେଉଁ ବିଚାର ।
ଗମ୍ଭୀରାରୁ କିବା ଶ୍ରୀମୁଖ ଆଦେଶ
ପଠାଇଅଛନ୍ତି ଦେବ ମୋ ପାଇଁ,

କହ ବେଗେ ବାୟୁ କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇଁ ?
ନୀଳାଚଳବାସୀ ମୋତେ କି ଆଶ୍ୱାସି
କହିଛନ୍ତି କିଛି ଶୁଭ ବାରତା,

ସାଧାରଣ ସନ୍ଥ ସେବକ ମହନ୍ତ
ପକାନ୍ତି କି କେବେ ସ୍ୱରାଜ୍ୟ କଥା ?
ସାରି ଦରଶନ କ୍ଷେତ୍ର-ପ୍ରଦକ୍ଷିଣ
କରିଥିବ ପୁଣି ଉତ୍ତର ଗତି,

ଅଟକାଇ ଥିବେ ପଥରେ ଟିକିଏ
ସତ୍ୟବାଦୀକୁଞ୍ଜେ ତରୁବ୍ରତତି ।
ସୁମଧୁର ତାନେ ତବ ଆବାହନେ
ଗାଇଥିବ ପିକ ସ୍ୱାଗତ-ଗୀତି,
ବକୁଳ ତମାଳ ଦେଇଥିବେ ତାଳ
ଫୁରି ଉଠିଥିବ ପରମ ପ୍ରୀତି ।

ଦେଉଳେ ପ୍ରବେଶି ଗୋପୀନାଥ-ବଂଶୀ-
ରନ୍ଧ୍ରେ ରଚିଥିବ ଅଶ୍ରୁତ ସ୍ୱନ,
ରାଧିକା ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରିଥିବ ଜାଣି ବେନଙ୍କ ମନ ।
ହସି ଉଠିଥିବେ ଯୁଗଳ ମୂରତି
ଖସି ପଡ଼ିଥିବ ଶ୍ରୀଅଙ୍ଗୁ ଫୁଲ;
ନବଘନ ଶିରେ ଆହା କି ରୁଚିରେ
ହଲିଥିବ ବାଙ୍କ ମୟୂରଚୂଳ ।
ବଉଳ ସେବତି ମରୁଆ ମାଳତି
ଚମ୍ପା ନାଗେଶ୍ୱର ଜାଈ ଦଅଣା,
ଚହଟାଇ ବାସ ତବ ଚଉପାଶ
କରିଥିବେ-ଗନ୍ଧବ୍ୟୂହ ରଚନା ।
ବରଜ-ବିହାରି ଗୋପୀ-ମନୋହାରି
ଗୁପତେ କରନ୍ତି ଯହିଁ ବିହାର,
କି ଉପମା ତାରେ ସେହି ସୁଷମାରେ
ସେହି ସ୍ଥାନ ପଟାନ୍ତର ତାହାର ।
ବସନ୍ତମାଧୁରି କୁଞ୍ଜେ କୁଞ୍ଜେ ପୂରି
ପଡ଼ୁଥିବ ଯହିଁ ଉଛୁଳି ସତେ,
ଦେବଦତ୍ତ ଧାମ ମୋ ପ୍ରିୟ ଆଶ୍ରମ
ପଡ଼ୁନ୍ତି କି ତବ ନୟନ ପଥେ ?
ମୋ ସଖା ସୋଦର ପ୍ରିୟ ପରିକର
ଅନ୍ତେବାସୀ ବନ୍ଧୁ ପଡ଼ୋଶୀଗଣ,
ଅଛନ୍ତି ତ କୁଶଳେ ବିରହ ବିକଳେ
ବିବର୍ଣ୍ଣ ହୋଇନ୍ତି ନୁହେଁ ବଦନ ?

ସନ୍ଧ୍ୟବାଘ କୁଞ୍ଜ— ଲୁଗାଅନାପୁଞ୍ଜ
ଜାଣିଥିଲେ ଏଥି ତବ ସଞ୍ଚାର,
ଅବଶ୍ୟ ମୋ ପାଇଁ ଥିବେ ପଠିଆଇ
ମୃଦୁ ମଧୁମୟ ଗନ୍ଧସମ୍ଭାର ।
ଗନ୍ଧଭରେ ଭରା ଆସିଥିବ ପରା
ଧୀରେ ଧୀରେ ସିଧା ଉତ୍ତରଦିଗେ,
ଲଙ୍ଘି ବିଲ ଗ୍ରାମ କଲ୍ କି ବିଶ୍ରାମ
ଲିଙ୍ଗରାଜ-ଦେବ-ଦେଉଳ-ଶିଖେ ?
ସର୍ବଗ୍ରାସୀ କାଳ ପ୍ରାଚୀନ ଉତ୍କଳ
କଳା କଉଶଳ କରେ ଗରାସ,
ବୈଭବ କଙ୍କାଳ ବିଲୋକି ଅନିଲ
ପାଇଥିବ ପ୍ରାଣେ ଗଭୀର ତ୍ରାସ ।
କେତେ ଚମତ୍କାର ମନୋଜ୍ଞ ମନ୍ଦିର
ମିଶିଛି ମାଟିରେ, ପଡ଼ିଛି ପଦା,
ଖଣ୍ଡ ଖଣ୍ଡ ଶିଳା ଖସି କାହା ଦେହୁଁ
ଉଭା ହୋଇଅଛି ପଥର ଗଦା ।
ଶିଳ୍ପସିଦ୍ଧି ସୀମା ପାଷାଣ ପ୍ରତିମା
ଭାଙ୍ଗିଅଛି ମୁଖ, ତୁଟିଛି କର,
ପଡ଼ିଅଛି ବାଟେ କବା ବଣ ପାଟେ
ହୋଇଅଛି କାହିଁ ଲୁଠ ପଥର ।
ହଳମୁନେ କ୍ଷେତେ ବାହାରନ୍ତି କେତେ
ଖୋଦିତ ଅଖଣ୍ଡ ଅପୂର୍ବ ମୂର୍ତ୍ତି,
ଲୁଚି ନାହିଁ ତଳେ ଲାବଣ୍ୟ-ସୁଷମା
ପ୍ରକାଶେ ସର୍ବାଙ୍ଗେ ଜୀବନ୍ତ ସ୍ଫୂର୍ତ୍ତି ।

ଲାଗେ ଦକ୍ଷ ଶିଳ୍ପୀ                    ମନେ କି ବିକଳ୍ପି
ସଦ୍ୟ ଗଢ଼ି ରଖିଗଲା ଗୋପନେ,
କି ଅବା ମେନକା                    ଭୁଲିଗଲା ଏକା
ଶିଶୁ ଶକୁନ୍ତଳା ଫିଙ୍ଗି ବିଜନେ ।
ନୃପତି ନବର-                    ପତନ ପ୍ରାଚୀର
ସଞ୍ଚାର ଦେଖାଏ ମୃତ୍ତିକା ସ୍ତୂପ,
ଲତା ଗୁଳ୍ମରାଶି                    ଗଲାଣି ଗରାସି
କେତେ ସୁଗଠିତ ତଡ଼ାଗ କୂପ ।
ଶକ୍ତି ଗୁଡ଼ ବ୍ୟଙ୍ଗ                    କେତେ ଶିବଲିଙ୍ଗ
ପଡ଼ିଛନ୍ତି କାହିଁ ତା ପରିଚୟ ?
ରହିଛି କେବଳ                    ଐଶ୍ୱର୍ଯ୍ୟର ଛାୟା
କି ବିଭବ ଆହା କି ବିପର୍ଯ୍ୟୟ !
ବିଧ୍ୱସ୍ତ ଐଶ୍ୱର୍ଯ୍ୟ          . .          ମଧ୍ୟେ ଧରି ଧୈର୍ଯ୍ୟ
ଉଚ୍ଚ ଲିଙ୍ଗରାଜ-ତୁଙ୍ଗ-ମନ୍ଦିର,
ମହାଶମଶାନେ                    ଯଥା ବୀରାସନେ
ଯୋଗାରୂଢ଼-କଳ୍ପଯୋଗି-ଶରୀର ।
ଶୈବାଳ-ଆବୃତ                    ବିବର୍ଣ୍ଣ ବିକୃତ
ଧରଇ ବିରାଟ ଉନ୍ନତ କାୟା,
ଗମ୍ଭୀର ଉଦାସେ                    ଗୂଢ଼େଁ ତଡପାଶେ
ଲୁଚାଇଛି କି ସେ ଏ ଭବମାୟା ?
ସେ ଉଚ୍ଚ ଉଦାର                    ପୁରାଣ ସ୍ଥବିର
ସଦାଶିବକଳ୍ପ ଶିବମନ୍ଦିର,
ବିପୁଳ ଆକୃତି                    ବିଲୋକି ପ୍ରଣତି
କରୁଥିବ ପୂଜା ପାଦେ ସମୀର ।

ବେଶୀ ବେଳ ତହିଁ ନ ଥିବ ତ ରହି
କଏ ସେ ରହିବ ହୃଦୟ ବନ୍ଧି ?
ସେ ବିଷାଦମୟ ଭଗ୍ନ ଦୃଶ୍ୟଚୟ
ଦେଖି କାହା ଚିତ୍ତ ପାରିବ ସହି !
ଶମ୍ଭୁ-ସୁକଲ୍ୟାଣ ଯେବେ ସମୀରଣ
ବହିଥିବ ପୁଣି ଗତି ଉତ୍ତରେ,
ଦି' ପହଣ୍ଡ ଯାଇ— ଥିବ ବା ନ ଥିବ
ଭେଟିଥିବ ଖଣ୍ଡଗିରି ପଥରେ ।
ଦେଖିନାହିଁ କେତେ ଯହୁଁ ଖଣ୍ଡଗିରି
ଇତିହାସ ଯାର ଅଙ୍କେ ଅଙ୍କିତ,
ଅମର ଅକ୍ଷରେ ନୀରବ ଗମ୍ଭୀରେ
ଗାଏ ଯେ ଉତ୍କଳ-ଗୌରବ-ଗୀତ ।
ପଡ଼େ ଏବେ ମନେ . ପ୍ରଥମ ଯୌବନେ
ସୁଷମା-ପିପାସା-ସ୍ୱଭାବ ଉନ୍ମାଦେ,
ଖଣ୍ଡଗିରି ଶିରୀ ଦେଖି ନେତ୍ର ଭରି
ଶାନ୍ତା ନମଗନେ ବସିଲି ପାଦେ ।
କଳ୍ପନାର ପୋତେ କାଳ-ପ୍ରତିସ୍ରୋତେ
ଭାସି ଦେଖିଲି ମୁଁ ଉଜ୍ଜ୍ୱଳ ଛବି,
ଇତିହାସ ଯାର ନ କରେ ପ୍ରଚାର
ଶୁଣି ନାହାନ୍ତି ଯା କାବ୍ୟରେ କବି ।
କାଳର ପ୍ରଭାବେ ଜନସ୍ମୃତିପଟୁ
ରୂପରେଖ ଯାର ଲଭନ୍ତି ଆଜ,
କଳିଙ୍ଗର ସେହି ଅତୀତ ବିଭବ
ବୀର-ଖାରବେଳ-କୀର୍ତ୍ତିବ୍ରଜ ।

ବାଜେ ବୀରବାଜା କାହିଁ ରଣସଜ୍ଜା
କାହିଁ ବା ଲଗିଛି ଗୁପ୍ତ ମନ୍ତ୍ରଣା,
ଦୂର ଦେଶୁ ଦୂତ ବହନ୍ତି ବାରତା
ଯେବେ ଆସି କରେ ଦ୍ରୁମୁରେ ଜଣା ।
ଶ୍ରମଣ ସନ୍ନ୍ୟାସୀ ଦଳେ ଦଳେ ବସି
ଚଳିଅଛି କାହିଁ ତତ୍ତ୍ୱ ବିଚାର,
ଗମ୍ଭୀର ନିର୍ଘୋଷେ ଲୋକ ଉପଦେଶେ
କାହିଁ ବା ଅହିଂସା ଧର୍ମ ପ୍ରଚାର ।
ଖଣ୍ଡଗିରି ଅଙ୍ଗେ ଶିଳ୍ପୀ ଶତ ଶତ
ଖୋଳନ୍ତି ନିଭୃତ ଗୁମ୍ଫା ନିରତେ,
କାହିଁ ଗୁପ୍ତଚର 'ରାଜ୍ୟ ସମାଚାର
ଏକାନ୍ତେ ଜଣାଏ ନୃପ ପୁରତେ ।
କଳ୍ପନାର ନେତ୍ରେ . ଏହିପରି କେତେ
ଦିଶେ ନିତି ଖଣ୍ଡଗିରି ଶିଖରେ,
ବିନଷ୍ଟସର୍ବସ୍ୱ ବୃଦ୍ଧ ଖଣ୍ଡଗିରି
ବିରକ୍ତ ପରାୟେ ଉଭା ଗମ୍ଭୀରେ ।
ମହାକାଳ-ନୀରେ ବୁଦ୍‌ବୁଦ୍ ପରାଏ
ଯାଇଅଛି ମିଶି କଳିଙ୍ଗଭୂମି,
କଳିଙ୍ଗ ସନ୍ତାନ ଭୁଲିଛନ୍ତି ଏବେ
କଳିଙ୍ଗର ନାମ ଗୌରବସ୍ମୃତି ।
ତଥାପି ସେ ଗାଥା ରଖିଅଛି ଗିରି
କାଳ ପରାଭବେ ଦେଖାଇ ହିଆ,
ଅତି ନାରଖାର ରାଣୀହଂସପୁର
ସାକ୍ଷ୍ୟ ଦେବାଲାଗି ଅଦ୍ୟାପି ଠିଆ ।

ବୃକ୍ଷ ମୂଳଯାଏ ଶୋଭେ ଶିଳାକାୟେ
ପ୍ରାସାଦେ ପ୍ରାଙ୍ଗଣ ଗୁମ୍ଫା ଦେଉଳ,
ତରୁଲତାଦଳ ରୋଧିଛନ୍ତି ପଥ
ନବସନ୍ତ ସଦ୍ଧ ଶ୍ୱାପଦକୁଳ ।
ପଦପ୍ରାନ୍ତବାସୀ ସାଧୁ ଧର୍ମବେଶୀ
କହନ୍ତି ଅଦ୍ଭୁତ ବହୁ କାହାଣୀ;
ଦେଖାନ୍ତି ଶ୍ରୋତାଙ୍କୁ ପ୍ରତ୍ୟକ୍ଷ ପ୍ରମାଣ
କେତେ ଜୀର୍ଣ୍ଣସ୍ମୃତି କଠାଉ ଆଣି ।
ତାପସ ସାଧକ ଅଦ୍ୟାପି ଅନେକ
ନିବିଡ ଅନ୍ଧାର ଗୁହା ଗହ୍ୱରେ,
ଲୁଚି ରହିଛନ୍ତି ଗମ୍ଭୀର ନିଶୀଥେ
ଶୁଣାଯାଏ ତାଙ୍କ ସଙ୍ଗୀତ ନଭେ ।
ଶୁଣିଛି ମୁଁ ନିଜେ କହନ୍ତି ସେ ତେଜେ
ପଥିକ ବଦନେ ଦେଖି ସଂଶୟ,
ନୁହେଁ ତା ବଚନ ବାହ୍ୟ ସନ୍ତୋଷ ମାତ୍ର
ପ୍ରତିଫଳେ ନର ନିଜ ହୃଦୟ ।
ଅତିଥି ଆଦରେ ଅତି ଆଗ୍ରହରେ
କରିଥିବ ଖଣ୍ଡଗିରି ବନ୍ଦନ,
ବନ ଉପତ୍ୟକା ଗୁହାଗର୍ଭେ ଏବା
ସ୍ୱଚ୍ଛନ୍ଦେ ସଞ୍ଚରିଥିବ ପବନ !
ତବ ଆଗମନ ସନସନ ସ୍ୱନ
ଶୁଣି ଗିରିଗୁମ୍ଫା ଦରୀ କନ୍ଦର,
ଗାଇଥିବେ ଗୀତ ଗୌରବ-ସଙ୍ଗୀତ
ତୁମ ସ୍ୱର ସଙ୍ଗେ ମିଳାଇ ସ୍ୱର ।

ପୂର୍ବ ସୁଖସ୍ମୃତି ଦୁଃଖେ ମନେ ଆସେ
ବଢ଼ାଏ ବିଷାଦ ଦ୍ୱିଗୁଣ ପ୍ରାଣେ,
ତଥାପି ଉଦିତ ବିଷାଦ ସଙ୍ଗୀତ
ସନ୍ତାପେ ସତତ ସାନ୍ତ୍ୱନା ଆଣେ ।
କହ ସମୀରଣ କଲି କି ଦର୍ଶନ
ଶୁଦ୍ଧ ସାଧୁ ଆତ୍ମା ଗୁପ୍ତ ସଞ୍ଚାର,
ଖଣ୍ଡଗିରି ଚୂଳେ ବହଇ ମାରୁତେ
ଯା ଅମର ସୁଧା ସଙ୍ଗୀତ ଧାର ।
ଏ ମୋ କାଦ୍ୱାରେ ଲାଗିଯାଅ ବାରେ
ସେ ଦୂର ସଙ୍ଗୀତ ଶୁଭୁ ମୋ କାନେ,
କର୍ମି ଉଠୁ ମୋର ହୃଦ-ବୀଣାତାର
ମୋ ଅନ୍ତରଧ୍ୱନି ମିଶୁ ସେ ତାନେ ।
କି ଦେଖିଲ ଆଜି ହେ ବସନ୍ତବାୟୁ
କହ ବେଗେ କରନାହିଁ ଛଳନା,
ତୁମ୍ଭେ କି ନ ଜାଣ ନିର୍ବାସିତ ପ୍ରାଣ
ସ୍ୱଦେଶ-ସନ୍ଦେଶେ ପାଏ ସାନ୍ତ୍ୱନା ।
ଖଣ୍ଡଗିରି ଯରେ ଉନ୍ମୁକ୍ତ ଅମ୍ବରେ
କରିଥିବ ନବଗୀତ ରଚନା,
ବୃନ୍ଦରେ ଅଟକ କଲି କି କଟକ
ମହାନଦୀ ନୀଳନୀରବସନା ।
ଉଦ୍‌ବେଗ ବାହାନା କରିଥିବ ଯିନା
ଉପେକ୍ଷି ନ ଥିବ ତା ସମାଦର,
ଯେ ଯେତେ କର୍ମଠ କରେ କ୍ଷଣେ ମଠ
ପ୍ରେମପାଇଁ ହେବାବେଳେ ଅନ୍ତର ।

ଫୁଲ ଉଠିଥିବ ମହାନଦୀ ବକ୍ଷ
କମ୍ପି ଉଠିଥିବ ଲହରୀହାର,
ପଠା ଝଉଁପନ୍ତି ଥିଲେ ମଥା ପୋତି
ମୃଦୁହାସେ, ଦେଖି ଅଙ୍ଗବିକାର ।
ଦେଖିଥିବ ତଟ୍ଟ ବାରବାଟୀ ଦଶା
କ ବେଦନା ଥିବ ମରମେ ବାଧି,
ଉତ୍କଳର ଗୀର— ଦ୍ୱାର-ପ୍ରାଙ୍ଗଣ
ଏବେ ସେ ଉତ୍କଳ-ଶୌର୍ଯ୍ୟ-ସମାଧି ।
ଥିଲା ଦିନ ଯେବେ ନବତଳ ହର୍ମ୍ୟ
ଯୁଦ୍ଧଯାତ୍ରୀ ରାଜା ମେଲାଣିକାଳେ,
ଆଣି ନନ୍ଦୀନୀର ସିଞ୍ଚିଲା ସମୀର
ସ୍ୱେଦବିନ୍ଦୁସିକ୍ତ ମହର୍ଷୀ ଭାଲେ ।
ସ୍ନେହ-ସୁଧାବିନ୍ଦୁ ଯେତେ ମୁଖ-ଇନ୍ଦୁ
ମଣ୍ଡିଲା ପ୍ରସର ନେତ୍ରଯୁଗଳେ,
ବଞ୍ଚି ସୁଶୀତଳେ ହରିଲା କୌଶଳେ
ନ ପକାଇ ମୁକ୍ତାଫଳକ ତଳେ ।
ଯେବେ ରଣ ଜିତି ପୁରେ ଗଜପତି
ବାହୁଡ଼ିଲେ ହେଲା ଜୟ ଘୋଷଣା,
ଆଲଗଣେ ମିଳି ଘେନି ଅର୍ଘ୍ୟଥାଳି
କଲେ ବନ୍ଦାପନା ବୀର-ଅଙ୍ଗନା ।
ବାଜିଲା ମହୁରୀ ଶଙ୍ଖ ଭେରୀ ତୂରୀ
ଉଡ଼ିଲା ଅମ୍ବରେ ଜୟକେତନ,
ସେ ବିଜୟ ଘୋଷ ନେଲା ଦଶ ଦିଶ
କମ୍ପାଇଲା କେତୁ ଚୁମ୍ବେ ପବନ ।

ବନ୍ଦାପନା ଧୀପ ନଗ୍ରିଇଲ ପୁଣି
ଉଡ଼ାଇଲ ବାମା-ମଥା ଓଢ଼ଣା,
ତବ ଧୂଷ୍ଟପଣେ ପୁଲକିତ ପ୍ରାଣେ
ଦେଲେ ବ୍ୟାଜଗାଳି ବରବରଣା ।

ବାରବାଟୀ ଅଙ୍ଗେ ସେ ସୌଭାଗ୍ୟ ରଙ୍ଗେ
କରିଥିଲ ଅଭିନୟ ପବନ,
ଆଜି ତ ଦେଖିଛ ସେହି ବାରବାଟୀ
ଦେଖିଲ ସତ୍ୟ କି ଅବା ସ୍ୱପନ ।

ନ'ତଳ ପ୍ରାସାଦ ସେ ଶୌର୍ଯ୍ୟ ସମ୍ପଦ
ବିଜୟବାଜଣା ବିଜୟଧ୍ୱଜା,
ବୀର-କବିତାର ଶୌର୍ଯ୍ୟ ସମାଦର
ଉତ୍କଳର ବୀର-ଧର୍ମୀ ପ୍ରଜା ।

ବାରବାଟୀ ଗଡ଼େ ନେତ୍ରପଥେ ପଡ଼େ
ଏବେ କି ସେ ପୂର୍ବ ଦୃଶ୍ୟପଟଳ,
ପ୍ରତିବିମ୍ବେ ଶୋଭେ ପ୍ରତିନାଦେ କମ୍ପେ
ଆଉ କି ସରିତ-ହୃଦକମଳ ।

କରପୂର ଉଡ଼େ କିନାଥିଲେ ପଡ଼େ
କିନା ରଖିଥାଏ କର୍ପୂର ସ୍ମୃତି,
କିନା ଯାଇ ନାଶ ରହିଲେ ପାଉଁଶ
ଧରିବ ତା ଦେଖି କିଏ ସେ ଧୃତି ।

ଉଚ୍ଚ ମାଟିଗଦା ରୁକ୍ଷ ରକ୍ତ ପଦା
ପ୍ରାଚୀନ ଜାତିର ଶକ୍ତିଶ୍ମଶାନ,
ନିରେଖି ମଳୟ ସଦୟ ହୃଦୟ
ଧୋଇ କରିଥିବ ଶୋକେ ସମ୍ମାନ ।

ସେ ମୃତ୍ତିକାସ୍ତୂପ— ଶିରେ ଶ୍ୟାମ ଶସ୍ପ
ଚୁମ୍ବିଥିବ ଅଶ୍ରୁପୂର୍ଣ୍ଣ ନୟନେ,
କାଳଗ୍ରାସ ନାଶ ଉତ୍କଳ ଗୌରବ
କଳ୍ପିଥିବ ତହିଁ ଧରା ଶୟନେ ।
ମହତ ନିଧନେ ସେ ମହତ ସ୍ଥାନେ
ପଡ଼ିଥିଲେ କ୍ଷୁଦ୍ର ଧୂଳିକଣିକା
ଭକତି ଆଦର କରେ ଯେ ତାହାର
ସେ ହିଁ ଏ ମହତ ହୃଦୟ-ଶିକ୍ଷା ।

---

# ରେଳ ଉପରେ ଚିଲିକା ଦର୍ଶନ

( ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ ଦାସ )

ରହ ରହ କ୍ଷଣେ ବାଷ୍ପୀୟ ଶକଟ,
ଦେଖିବ ଚିଲିକା ରୁଚି-ଚିତ୍ରପଟ ।
ଚିତ୍ର ମନେ ଯେଣୁ ନାହିଁ ଅନୁଭବ,
ବାସ୍ତବ ବିଶ୍ୱେ କି ଏ ଛବି ସମ୍ଭବ ?
ନୀଳ ଊର୍ମିମାଳା ଧୀରେ ଧୀରେ ଯାଏ,
ଲାଗଇ ସ୍ୱପନେ ଦେଖିଲା ପରାଏ ।
ସନ୍ତରନ୍ତି ବକ୍ଷେ ପକ୍ଷୀ ଦଳ ଦଳ
ଓଲଟିଣ ତଳେ ଚରଣ ଯୁଗଳ,
ଘୋର ନାଦେ ଯନ୍ତ୍ର ଉଠିଲେ ସେ ନଭେ
ଉଠେ ଶତ ଖଗ ଚିଲିକା ଗରଭେ,
ସତ୍ୟ ବୋଲି ମନେ ନ ହେଉଁ ପ୍ରତୀତ
ପଲକେ ସେ ଦୃଶ୍ୟ ହୁଏ ତିରୋହିତ ।
ଦୂରେ ଦେଖାଯାଏ ନିଦାରୁଣ ଯାନ,
ଆସେ ପୁଣି ତରୁ ଶିଳା ବ୍ୟବଧାନ ।
ନିମିଷେ ଲୁଚଇ, ନିମିଷେ ଦେଖାଏ,
ସ୍ୱପ୍ନଲବ୍ଧ ପ୍ରିୟ ପ୍ରତିମା ପରାଏ ।
କାହିଁ ଘନେ ନୀଳ, କାହିଁ ସୁଶ୍ୟାମଳ,
କାହିଁ ବା ଧୂସର, କାହିଁ ବା ଧବଳ ।
ନାନାସ୍ଥାନେ ନାନା ରଙ୍ଗେ ଧରି କାୟା
ପ୍ରକାଶି ଚିଲିକା ! କରୁ କେତେ ମାୟା ।

ଦେଖ ବୀଣାପାଣି-ଶାଶ୍ୱତ ସେବକ,
କବି ରାଧାନାଥ ସୁଷମା-ଗ୍ରାହକ ।
ଭ୍ରମି ବହୁ ସ୍ଥାନ ବିଶାଳ ଭାରତେ,
ନଦ-ନଦୀ-ମରୁ-କାନନ-ପର୍ବତେ ।
ଦେଖିଲେ-ପ୍ରକୃତି-ବିବିଧ-ପ୍ରକାଶ,
କିନ୍ତୁ ଶୋଭାଲୁବ୍ଧ ଶୁଦ୍ଧ ଅଭିଳାଷ ।

ସୁଖ-ଶାନ୍ତି-ପ୍ରୀତି କାହିଁ ଏକାଧାରେ,
ନ ପାଇଲେ, ଯଥା ମିଳେ ତୋହଠାରେ ।
ଉତ୍କଳର ଭୂସ୍ୱ ସୌନ୍ଦର୍ଯ୍ୟର ଖଣି,
ସାରସ୍ୱତ-ନେବେ ବାଛୁ ତହୁଁ ମଣି ।
ସୁଦକ୍ଷ ବନ୍ଦାଣି ରଚି ଯେଉଁ ହାର,
ଅର୍ପିଲେ ଉତ୍କଳ-ଭାରତୀ ଗଳାର ।

ଚିରନ୍ତନ ତାହା ରହିବ ହୃଦରେ,
ତା ଦେଖି ଭାବୁକେ ଲୋଡ଼ିବେ ତୋ ତୀର ।
ମୁଁ ଅଧମ ମୋର ଭାବୁକତା ନାହିଁ,
ତଥାପି ଏ ପ୍ରାଣ କେ ଜାଣେ କିପାଇଁ ।

ନିରନ୍ତର ଲୋଡ଼େ ସୌନ୍ଦର୍ଯ୍ୟ ବ୍ୟାକୁଳେ,
ତେଣୁ ଭାବଥିଲି ଆସି ତୋର କୂଳେ ।
ଦେଖିବି ତୋ ଶୋଭା ଦିନେ ନିକାଞ୍ଚନେ,
କର୍ମବନ୍ଧେ ଥିଲି ମନକଥା ମନେ ।
ଏତେ କାଳ ଅନ୍ତେ ପଡ଼ିଥିଲି ଯୋଗ,
ଆହା ସେ ସୁଯୋଗ ହେଲି ନାହିଁ ଭୋଗ ।
ରହିଣ ଜଞ୍ଜାଳ ବିଷମ ଜଗତେ,
ସଂସାରୀ ସୋଦର ବାନ୍ଧବ ସଙ୍ଗତେ ।

ଇଚ୍ଛାମତେ କାହିଁ ଚଳିବୁ ବା କେବେ,
ସମାଜେ ନିଜର ନୁହେଁ ନିଜ ମନ ।
ବସି କେତେ ଥର ନୀରବ ବିଜନେ,
ଦେଖିଛି ତୋ ରୂପ କଳ୍ପନା-ନୟନେ ।
ତୋ ନୀର ତରଙ୍ଗେ ଖେଳେ ନିରନ୍ତର,
ଅନୁପମ ଦିବ୍ୟ ହିରଣ୍ମୟକର ।
ଗୁରୁ ଶଙ୍ଖସ୍ତୂପ ତୋର ବକ୍ଷସ୍ଥଳେ,
ନାଚେ ଶତ ଶତ ମୋ କଳ୍ପନାବଳେ ।

କଳ୍ପନାରଞ୍ଜିତ ତୋ ସୁନ୍ଦର ତନୁ,
କାଳେ କାଳେ ଆଜ ନ ଯିବ ମୋ ମନୁ ।
ଆଜ ଲୋ ଚିଲିକା ! କଳ୍ପନା ପ୍ରଭାବେ,
ପୂରଇ ମୋ ମନ ଆହା କେତେ ଭାବେ ।
ଅତୀତର ସୁଖ-ସ୍ମୃତି-ସମୁଚ୍ଚୟ,
ହର୍ଷ ଖେଦେ କରେ ଆକୁଳ ହୃଦୟ ।
ତୋ ମଧୁର ନାମେ ରହିଛି ଜଡ଼ିତ,
ଗଉରବପୂତ ଉତ୍କଳ-ଅତୀତ ।

କାହିଁ ଉତ୍କଳର ସେ ସୁକୃତରାଶି ?
ଯାହାର ପ୍ରଭାବେ ପ୍ରତ୍ନ ବ୍ରହ୍ମରାଶି ।
କେବେ ନିରଞ୍ଜନ ଜଗତ ଈଶ୍ୱର,
ଧରିଣ ସୈନିକ-ନର-କଳେବର ।
ଉତ୍କଳର ଯଶ-ପ୍ରତିଷ୍ଠା-ରକ୍ଷଣେ,
ବିଜେ କଲେ ଘୋର ସମର-ପ୍ରାଙ୍ଗଣେ ।
କାହିଁ ସେ ସୌଭାଗ୍ୟ କାହିଁ ସେ ସୁକୃତ ?
ଏବେ ଉତ୍କଳ ଆହା କି ବିକୃତ ।

ଆର୍ଯ୍ୟ ଧର୍ମକ୍ଷେତ୍ର ପୂତ ନୀଳାଚଳ
ହରାଇଛୁ ସବୁ କର୍ମ ଧର୍ମ ବଳ ।
ନାହିଁ ମୁଖେ ତେଣୁ ପୂର୍ବ ପୁଣ୍ୟକାନ୍ତି,
ହୃଦୟେ ସ୍ୱର୍ଗୀୟ ଧର୍ମ ଜାତ ଶାନ୍ତି,
ଜୀବନେ ପବିତ୍ର ଉତ୍ସାହ ଶକତି,
ଉତ୍କଳର ଆହା କି ଘୋର ଦୁର୍ଗତି ।
କାହିଁ ଗଲା ପୂର୍ବ ଓଡ଼ିଆ-ବୋଇତ
କାହିଁ ସେ ନାବିକ-ଉଦ୍ଦାମ-ସଙ୍ଗୀତ !
ଜଳପଥେ କାହିଁ ବିଦେଶ ଗମନ
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବ ଧନ ।
କଥାରେ ରହିଛି ସବୁ ଆଜଯାଏ;
ସାଧବାଣୀ ବୋହୂ ବୋଇତ ବନ୍ଦାଏ ।
କଙ୍କରିତ ତୋର ଦୃଢ଼ ରମ୍ୟତଟ,
ଦୁର୍ଗମ ଶଇଳ ଅଭେଦ୍ୟ ସଙ୍କଟ;
ଖେଳାଉଥିଲେ ଯେ ଧରି ନିଜ ଦେହେ
ଉତ୍କଳର କେତେ ବୀର-ଶିଶୁ ସ୍ନେହେ ।
ଅଛି ସେହି ଗିରି, ଅଛି ସେ ବିପିନ,
ଅଛି ତୋର ଶିଳା—ସୁଦୃଢ଼ ପୁଳିନ;
କିନ୍ତୁ କାହିଁ ଆହା ଏବେ ସେ ବୀରତା
ଓଡ଼ିଆ ଜାତିର ପୂର୍ବ ଜାତୀୟତା ?

---

# ବୌଦ୍ଧକୀର୍ତ୍ତି

( ସ୍ୱର୍ଗତ ମୃତ୍ୟୁଞ୍ଜୟ ରଥ, କାବ୍ୟତୀର୍ଥ, ବାଣୀଭୂଷଣ—
'ନବ୍ରଜ' ରୁ ଗୃହୀତ )

ଧନ୍ୟ ଧନ୍ୟ ଆହେ ବୌଦ୍ଧ ନରପତି
ଶୈଳଗର୍ଭ ତୋଳ ସ୍ଥାପିଲ ଭାରତି,
ଧନ୍ୟ ତୁମ୍ଭ ଦମ୍ଭ ଧନ୍ୟ ଶିଳ୍ପକଳା
ଶୈଳ କୋରିବାରେ ହୋଇଲ କୁଶଳା ।
ଭାରତର ପ୍ରାନ୍ତ— ଜନପଦେ ତବ
ରହିଛି ଏ ଶିଳ୍ପ ଅନଳ୍ପ ବୈଭବ,
କାହିଁ ଶୈଳ ଶିଖେ ଗହ୍ୱରେ ନିତମ୍ବେ
କାହିଁ ଗିରିଖୋଲେ ସ୍ତୂପେ ସ୍ତୂପେ ସ୍ତମ୍ଭେ,
ବସାଇଲେ କେତେ ରମ୍ୟ ସୌମ୍ୟ ମୂର୍ତ୍ତି
ତଥାପି ସ୍ମୃତିର ହେଲ ନାହିଁ ଫୂର୍ତ୍ତି ।
ପ୍ରସ୍ଫୁରିଲ ଧର୍ମ ରାଜ୍ୟେ ପ୍ରଜାବନ୍ଧୁ
ଉଦ୍ଧାରିବା ପାଇଁ ଜନେ କର୍ମବନ୍ଧୁ ।
ପାରୁ ନାହିଁ ଘୋର ଏ କରାଳ କାଳ
ତବ କୀର୍ତ୍ତିମାଳ, ରହିଛି କଙ୍କାଳ ।
ପା ଲେ କ ଲେଖି ଭିନ୍ନଧର୍ମୀ ଭୂପେ
ସ୍ଥାପି ଅନ୍ୟରୂପ ସେହି କୀର୍ତ୍ତିସ୍ତୂପେ ?
ନ୍ତର୍ପିଅଛି ସତ୍ୟ କେତେ ସେ ମୂରତି,
ହୋଇଲଣି କାଳ ଆନେ ପରିଣତି ।

ବହଳ ସିନ୍ଦୂର— ଲେପେ ସେ ହେଲଣି
ଗ୍ରାମପ୍ରାନ୍ତ ତରୁ- ତଳେ ଠାକୁରାଣୀ (୧)
କେ ସନ୍ତୁମାଧବ (୨) ନାମେ ପରିଚିତ
ହିନ୍ଦୁ କରେ ପୁଷ୍ପ— ଚନ୍ଦନ ଚର୍ଚ୍ଚିତ
କାହିଁ ବାସୁଦେବ ଧର୍ମ ନିରଞ୍ଜନ
କାହିଁ ସିଦ୍ଧନାଥ ଶାନ୍ତ ନାରାୟଣ,
କାହିଁ ଶିବାଳୟ ପାରଶ୍ୱ ଦେବତା
କାହିଁ ଦ୍ୱାରପାଳ କିଏ ଜାଣିବ ତା ?
ତଥାପି ସେ ରୂପ ଏ ଗୁମ୍ଫା ଗୋପନେ
ଜପୁଛନ୍ତି ଭକ୍ତ ନାମ ଅନୁକ୍ଷଣେ,
ସେ ନାମ ଅଛି କେ ନେବ ବା ଛଡ଼ାଇ ?
ଶୁଦ୍ଧବପୁ ସତ୍ୟ ଦେବ ଘଉଡ଼ାଇ ?
କି କ୍ଷଣେ ଜନ୍ମିଲ ମୁନୀନ୍ଦ୍ର ଗୌତମ;
ପୂତ ଏ ଭାରତ— ଧାମ ଅନୁପମ,
ଭବେ ଅପ୍ରତିମ ରାଜଲକ୍ଷ୍ମୀ ସୁଖ
ଲିପେନି ସଂସାରୁ ହୋଇଲ ବିମୁଖ ।
ଆଦରି ଦୁଷ୍କର ତପସ୍ୟା ସାଧନ
ନାଶିବାକୁ ବିଶ୍ୱ— ଜନଙ୍କ କଷଣ,
ଲଙ୍ଘି ଘୋର ଗିରି କାନ୍ତାର ସରିତ
ମହାବୋଧିତଳେ ହେଲ ଉପସ୍ଥିତ;

(୧) ଉତ୍କଳର ବୌଦ୍ଧପ୍ରଧାନ ଅଞ୍ଚଳରେ ଏ ଦୃଶ୍ୟ ବିରଳ ନୁହେଁ । ଧଉଳି ଓ ଯାଜପୁରର ମୂର୍ତ୍ତି ଅନୁସନ୍ଧେୟ ।

(୨) ଯାଜପୁରରୁ ଏକ ଅତି ସୁନ୍ଦର ବୁଦ୍ଧ ମୂର୍ତ୍ତି ମିଳିଥିଲା । ତାହାକୁ ସ୍ଥାନୀୟ ଲୋକେ ସନ୍ତୁମାଧବ ବୋଲି କହନ୍ତି ।

ସାଧି ମହାଯୋଗ ମହାବୋଧ ତତ୍ତ୍ୱ
ଧରି ଉଦ୍ଧରିଲ ପାପମୟୀ ମହୀ ।
ଅସ୍ତ ଜ୍ଞାନରବି ପଶ୍ଚାତେ ଅନ୍ଧାର
ଘୋଟିଥିଲା ଧୀରେ ଭାରତ ସଂସାର,
ସେ ତମିସ୍ରା ନାଶେ ଶୀତରଶ୍ମି ବନ୍ଧୁ
ଶାନ୍ତିର ଭୁବନ ହେ ନବ ବରେଣ୍ୟ
ଉଠିଲ ଚନ୍ଦ୍ରମା— ରୂପେ ଅବତରି
ଗଲା ଉଡ଼ିଯାଇ ସେ ଜ୍ୟୋତ୍ସ୍ନା ପ୍ରସରି
ସୁଦୂର ସିଂହଳ ତିବ୍ବତ ଜାପାନେ
ଉଡ଼ିଲା କେତନ ତୁମ୍ଭ ଶୁଭ ନାମେ ।
କାତ୍ୟାୟନ ଆଦି କେତେ ମୁନିବର
ପ୍ରଚାରିଲେ ନବ ଧରମ ତୁମ୍ଭର ।
ଯେଉଁ ଧର୍ମପୁରେ ଭୂରି ଭୂରି ସୂରି
ପୂରି ଯୁଗେ ଯୁଗେ ଏହି ଦେବପୁରୀ (୧)
ପୂରାଇଲେ ପୁଣି ଦେଶ ଦେଶାନ୍ତର
ଉପଦେଶ-ସୁଧା— ରସେ ନିରନ୍ତର,
ସତ୍ୟ ଧର୍ମ ସାଥେ ସଦ୍‌ଜ୍ଞାନ-ସରିତ
ବହିଗଲା ଦିଶି ଦିଶି ଅବାରିତ ।
ଥିଲା କି ସୁପ୍ରଭା ଭାରତ ଧରଣୀ
ଲଭିଲେ ସେ କାଳେ ସକଳେ ଏ ମଣି ।
ଚଳିଲେ କେ କେତେ ଦିଗ୍‌ଗଜ ପଣ୍ଡିତ
ନାନା ଶାସ୍ତ୍ର ଧର୍ମ ସୂକ୍ଷ୍ମ ତର୍କାଶ୍ରିତ,

(୧) ଭାରତ

କଳା ବିସମ୍ବାଦ (୧)
ହୋଇଥିଲା ବୃଦ୍ଧି,
ହେବାରୁ ସମୃଦ୍ଧି
ଭରତ ଭରଣି
ସେହି ଧନେ ହୋଇ
କେତେ କେତେ ମୁନି
ସମାଜର ହିତେ
ଗୁହା ଗିରିଖୋଲେ
ଧନ୍ୟ ଯତି ! ତୁମ୍ଭ
ଯାପିଲ ସେ କାଳେ
କେଉଁ ଦମ୍ଭେ ତୁମ୍ଭେ
ଗମୁଥିଲ ବନ
ଚଉପାଶେ ଗ୍ରାମ
ମଧ୍ୟେ ଜଳାରଣ୍ୟ
ବିଚର୍ଯ୍ୟୀଙ୍କୁ ଏହା
ଥିଲା, ତୁମ୍ଭେ କିନ୍ତୁ
ନିସର୍ଗ ସୁଷମା—
ମତ୍ତ ହୋଇ ସିନା
ଦେଖିଥିବ କେତେ
ଏହି କଲ୍ଲୋଳିନୀ—
ଏ ସ୍ନିଗ୍ଧ ଶ୍ୟାମଳ
ଶୁଭ୍ର ସଇକତ—

ବିଦ୍ୟାର ଯେସନ
କଳାର ତେସନ
ବେନିଙ୍କ ମିଳନେ
ସେ ଅପୂର୍ବ ଧନେ ?
ଆଦ୍ୟ ଅଧିକାରୀ
ଶୁଦ୍ଧବୁଦ୍ଧି-ଧାରୀ,
ଭଜି ପରିବ୍ରଜ୍ୟା
କଲେ ତପଶ୍ଚର୍ଯ୍ୟା
ବିଳ (୨) ବସ୍ତ୍ରଲତା
ଅର୍ଜି ଅମରତା ।
ଶୂନ୍ୟ ଶୈଳମୂଳେ
ମହାନଦୀ କୂଳେ ?
ଶଇଳ ପଙ୍କତି
କି ବିରାଟ ଅତି
ସିନା ଭୟଙ୍କର
ଶୋଭାର ଆକର ।
ସୋମରସ ପାନେ
ରତ ଥିଲ ଧ୍ୟାନେ ?
ବସି ଏ ନିଟରେଳେ
କେଳି ବେନି ତୋଳେ
ତରୁ ଗୁଳ୍ମଜାଳେ
ଟଙ୍କ ଶୈଳମାଳେ ।

---

(୧) ବିରୋଧୀ ।
(୨) ଗୁହା ବା ଗୁମ୍ଫା ।

ଦିବ୍ୟ ଛବି ଅନୁ—    ଭବ ଏ ଜାରବେ
ଥିଲ ଭବେ ଦେଳ    ପାର୍ଥିବ ବିଭବେ ।
କାହିଁ ଗଲା ଭୁନ୍ତ    ସେ ଧ୍ୟାନ ଆସନ
ରହିଲା କେବଳ    ଏ ଶିଳା-ପଞ୍ଜରା ।
ଶୂନ୍ୟ ଗୁମ୍ଫା ବନ୍ଧ    ପଡ଼ିଛି ନସାଜ
ଏ କାଳକୁ ଲୋକେ    ଛନ୍ଦିଁକ ନାରାଜ ।
ଅହିଂସା ଅଭୟ—    ଆଦ୍ୟ ସତ୍ୟବାଣୀ
ବଖାଣିବା ପାଇଁ    ଅଛି କେ ସନ୍ଧାଣୀ ?

କଳ୍ପତରେ ତାହା    ଏ ଗୁମ୍ଫା ଅନ୍ତର
ଅଙ୍କୁରଇ ଦିଏ    ଖାବୁକ ଅନ୍ତର ।
ଏ ଶିଳା ମଣ୍ଡପ    ଏ ଶୈଳ ପବନ,
ତବ ଅନ୍ତେବାସୀ    ପ୍ରାପ୍ତ ଅନୁକ୍ଷଣ
ଖଟନ୍ତ ପଥିକ    ପଥ୍ୟ ଲାଗି ଆହା
ବାହାରର ତାପ    ନ ପାଏଟି ସହା ।
ଏ ନଦୀର ଦିବା    ସଉବନଶଂସୀ
ନୃଶଂସ ଆତପ—    ପ୍ରତାପକୁ ଧ୍ୱଂସି
ଦେଉଛି ଆଶ୍ୱାସ    ଶୀତ ଗାନ୍ଧସ୍ପର୍ଶେ
ଦୂର ଦାବାଗ୍ନିର    ତପତିକୁ ଧର୍ଷେ ।

ଏ ନଦୀ ତରଙ୍ଗେ    ଶୀତଳିତ ଅଙ୍ଗ
ମନ୍ଦାନିଳେ ସ୍ଫୁରି    ଲଭି ଅଙ୍ଗସଙ୍ଗ
ବିତରଇ ସେହି    ଶାନ୍ତ ସୁଧାରସ
କ୍ଷଣେ ହୁଦ ଯାରେ    ଡୁଅଇ ସରସ ।
କେତେ ଯତ୍ନେ ଭଲା    ଲଭିବ ସମାସ
ଅଯତ୍ନ-ଲବଧ    ଏହି ଶାନ୍ତ-ବାରି ।

ଏଠାର ମାଧୁରୀ ଏଦେଶ ସୁଷମା
ଏ ପୁଣ୍ୟ ବିଭୂତି ପ୍ରୀତି ନିରୂପମା ।
ଏ ବିଜନସ୍ଥଳୀ କମନୀୟ ଛବି,
ପାରିବ କି ଘରେ ବସି ଅନୁଭବି ?
ଯେତେ ଦେଖ ତହିଁ ମୋହିନୀ ମୂରତି
ହେବ କି ତହିଁରେ ଆତ୍ମାର ତୃପତି ?
ସେ ରୂପରେ କାହିଁ ଏତେ ପବିତ୍ରତା
ବିଶ୍ୱଜନପ୍ରିୟ ସାଧୁତା ମୁଗ୍ଧତା ।
ଭୁଞ୍ଜିବାକୁ ବାଞ୍ଛା ଥିଲେ ଏ ସମ୍ପଦ
ଭଜ ବନେ ହେଲେ ଏଭଳି ଆସ୍ପଦ ।

× × ×

# ଧଉଳ ପାହାଡ଼

( ସ୍ୱର୍ଗତ ରାୟସାହେବ ପଦ୍ମଚରଣ ପଟ୍ଟନାୟକ, ବି· ଏଲ୍: )

( ୧ )

ଧଉଳ ପାହାଡ, ଧଉଳ ପାହାଡ,
କାହିଁକ ମଉନେ ରହିଛ ଆଜ,
ଦଇଆ ବାଲରେ କେତେ ଖୋଜୁଥିବ
ଅତୀତ ଗୌରବ-ଗରବସାଜ ।
ଧଉଳ ପାହାଡ଼, ଧଉଳ ପାହାଡ,
ରୁକ୍ଷ ମୁଖ ଦୁଃଖ-ଗୁଳ୍ମେ ଆବର
ତପସ୍ୱୀ ପରାଏ ବର୍ଷି ରହିଅଛ
କ ଭାବନା ଭାବ ହବା ଶବଶ ।
ଧଉଳ ପାହାଡ଼, ଧଉଳ ପାହାଡ଼,
ଲଜ୍ଜା ଦୁଃଖ ତେଜ ଟେକ ହେ ମଥା,
ଶୁଣାଅ ସେ କାଳ ଗୌରବ-କାହାଣୀ
କହ ହେ ସେ କାଳ ଗରବ କଥା ।
ଧଉଳ ପାହାଡ଼, ଧଉଳ ପାହାଡ଼,
ଅଶୋକ ରାଜନ ରହିଲେ କାହିଁ ?
କାହିଁ ସେହି 'ଧର୍ମ' କାହିଁ ବା ସେ 'କର୍ମ'
ତିଳେ କ ଏ କାଳେ ମିଳିବ ନାହିଁ !

( ୨ )

ଧଉଳ ପାହାଡ଼, ଧଉଳ ପାହାଡ଼,
ଶୋଭେ ତବ ଶିରେ ଗୌରବ ଟୀକା,

ଗୁରୁପରି ନିଜେ ନୃପତି ତନୟେ
ଶିଖାଇଛ ଧର୍ମ, ଦେଇଛ ଦୀକ୍ଷା
କଳ୍ପନାରେ ଗୁଡ଼େ ହୁଏ କାଳ ପରି
ଆସିଲେ ଉତ୍ତରୁ ସହସ୍ର ବୀର,
ରଣମଦେ ସର୍ବେ ଶ୍ୱାପଦ ସମାନ
ଜାଣନ୍ତି କପରି କାଟିବେ ଶିର,
ଯହିଁ ବାଟ କାଟି ଆସିଲେ ବହିଲା
ରକ୍ତ ସ୍ରୋତ ଆଗେ ସଙ୍କେତ ପରି
ଯହିଁ ଗଲେ ତହିଁ ଖୋଜିଲେ କପରି
ଅସି ମୁନେ ବେଗେ ନାଶିବେ ଅରି ।
ପିଇ ପିଇ ରକ୍ତ ତୃଷା ନ ମେଣ୍ଟିଲା
ମହାନଦୀ ତୀରେ ପଶିଲେ ଆସି,
ପରଶିଲାକ୍ଷଣି ମହାନଦୀ ଜଳ
କରୁ କରବାଳ ପଡ଼ିଲା ଖସି,
ଥର ଥର କରି ଛନ ଥର ଅସି
ଧରିଲେ ଖସିଲା ଭୂତଳେ ଖରେ,
ଏ କି ଅଦଭୁତ କଥା ଭାବି ଭାବି
ଚକିତେ ସମ୍ମୁଖେ ଗୁହିଁଲେ ତୀରେ ।
ପର୍ବତ ପ୍ରମାଣେ ଦାଉ ଦାଉ ହୋଇ
ଦୂରରେ ଦିଶିଲା ରକ୍ତ-ଅନଳ
ମନେ ମନେ ବୀରେ ପ୍ରମାଦ ଗଣିଲେ
ଜାଣିଲେ ଏଥର ସରିଲା ବଳ ।
କର ଯୋଡ଼ି ବୀରେ ନୃପତି ସମ୍ମୁଖେ
ଜଣାଇଲେ, "ନାଥ, ନ ଯିବା ଆଉ,

ଦେବଲୀଳା ଭୂମି, ଏ କଳିଙ୍ଗ ଭୂମି;
ବୋଲୁଛନ୍ତି ଲୋକେ, ଏ ଦେଶ ଆଜ ।"
ଦର୍ପେ ପଶୁ ପରି ଗର୍ଜିଲେ ନୃପତି
"କାହିଁ କେଉଁଠାରେ ନାହିଁ ଦେବତା,
ଦେବତାର ଭୟ ଖାରୁର ସମ୍ବଳ
ଦୀନ ଦୁର୍ବଳର ପ୍ରାଣର କଥା,
ଅସି ମୋ ଦେବତା, ସବୁ ସାଧିବାକୁ
ଏଥିରୁ ବା ବଡ଼ କି ଅଛି ଆଉ ?
ଶୁଣିଛି କଳିଙ୍ଗ ବୀରଭୂମି ବୋଲି
ଜିଣିବ ଗଲେ ମୋ ଜୀବନ ଯାଉ ।
ଉଠ ଉଠ ବୀରେ, ଚେଳ ହେ ବିଷାଦ,
ହେଜ ହେ ଅତୀତ ଗୌରବ କଥା,
କେତେ କଷଣରେ ଜିଣିଛି ଯେ ଦେଶ
କରିବା କଳିଙ୍ଗ ସେ ଦେଶ ମଥା !"
ଚିରସାହସିକ କଳିଙ୍ଗ ତନୟେ
ହସି ଶତ୍ରୁ ସଙ୍ଗେ କଷିଲେ ବଳ,
ଚଳେ ତ କାହିଁ ଶବ ପଡ଼ି ଗଡ଼ିଗଲେ
ଅରୁଣ ଦଶିଲା ଦୟା ଜଳ ।
ବିଜୟ ଉଲ୍ଲାସେ ଅଶୋକ ରାଜନ
ଗଣୁଥିଲେ ବସି ଶତ୍ରୁଙ୍କ ମଥା,
ଧଉଳି ପାହାଡ଼, ଭୁନି ଭୁନି କରି
କବା ତାଙ୍କ କାନେ କହିଲା କଥା ।

( ୩ )

ଧଉଳି ପାହାଡ଼, ଧଉଳି ପାହାଡ଼,
କି କଥା କହିଲ ରାଜାଙ୍କ କାନେ !

କି ଗାଥା ଗାଇଲ ଘଡ଼ିକେ ରାଜନ
ବୁଡ଼ିଲେ ଅପୂର୍ବ ସମାଧି-ଧ୍ୟାନେ ।
ରଣୋନ୍ମାଦେ ମାତି ବିଜୟ ଉଲ୍ଲାସେ
ଗଡ଼ୁଥିଲେ ତବ ଚରଣତଳେ,
ଗଡ଼ୁଥିଲେ କେତେ ଆଶାର ସଉଧ
କାହିଁକି ଭସିଲେ ନୟନ ଜଳେ ।
ଧ୍ୟାନ ଭଙ୍ଗେ କ୍ଷଣେ ଗୁହ୍ଲିଲେ ଚକିତେ
ତବ ଶିରେ ପୁଣି ପୋଡିଲେ ମଥା,
'କି କଲି', 'କି କଲି', କହିଲେ ବିକଳେ
ଲଭିଲେ ବା ପ୍ରାଣେ ଦାରୁଣ ବ୍ୟଥା ।
'କି କଲି', 'କି କଲି', କାହୁଁ ଆସି ନାହିଁ
ପଡ଼ିଲି କି ଘୋର ଜିଗୀଷା ଜାଲେ,
'କିବା କଥା ଲଗି ଏ ସବୁ କହିଲି,
ଲେଖିଲି କି କହି ଏ ଦଶା ଭାଲେ !
'ଶୋଣିତର ସ୍ରୋତ ନିଜେ ବୁହାଇଲି,
କେମନେ ଏ ଶୋକ ନିଭିବ ମୋର,
'ଆଗେ ଆଗେ ମୋର ଜଳାଇ ବସିଲି
ଜୀବନାଶୀ ଚିତା ଭୀଷଣ ଘୋର ।
କେତେ ପ୍ରାଣୀ ନିଜେ ନାଶିଲି ଏ କରେ
କେତେ ଦେଶ କଲି ଶ୍ମଶାନମୟ,
'କେତେ ସୁଖସୌଧେ ଜାଳିଛି ଅନଳ,
କେତେ ପ୍ରାଣେ ମୁହିଁ ଆଣିଛି ଭୟ ।
'କି ପିପାସା ଦେଇ ଲଭିଲି ଜନମ
କାଳେ କାଳେ ତାର ନ ହେଲା ଶାନ୍ତ;

'ସାରା ଜୀବନଟା ଆବୋର ବସିଲି
କି ଅସାର ଆଶା ମଧୁର ଭ୍ରାନ୍ତି ।
'ଲୁବ୍‌ଧ ମୃଗ ପରି ମୁଗ୍‌ଧ ହୋଇ ମୁହିଁ
ଇନ୍ଦ୍ରପୁର ସୁଖେ କାଟିଲି କାଳ,
'ଜ୍ୱଳନ୍ତ ଅନଳେ ଇନ୍ଧନ ଯୋଗାଇ
ପାପେ ପୂର୍ଣ୍ଣକଲି ଏହି ସଂସାର ।
'ଧୂମକେତୁ ପରି ଧୂମପୁଚ୍ଛ ଧରି
ବୁଣିଲି ମଣ୍ଡଳ-ଯାତନା ରାଜି,
'ଲୋକ-ଅଶ୍ରୁ-ରକ୍ତ ସ୍ରୋତେ ଭାସି ଭାସି
ଏ ଗିରିଚରଣେ ଅସିଛି ଆଜି ।
'ଏ ଗିରି ଚରଣେ ଏହି ନଦୀକୂଳେ
ଲଭିଲିଣି ଆଜି ପରମ ଶିକ୍ଷା,
'ଏ କଳିଙ୍ଗ ଦେଶ ହେଲେ ମୋର ଗୁରୁ
ଘେନିବ ଏଥି ମୋ ଜୀବନଦୀକ୍ଷା ।
'ଏହି ଦେଶେ ବସି ଏହି ନଦୀ କୂଳେ
ଫେରାଇବି ମୋର ଜୀବନଗତି,
ସାକ୍ଷୀ ରହ ମୋର ସର୍ବ ଦିଗପାଳ
ସାକ୍ଷୀ ରହ ମୋର ଜୀବନପତି ।
୬
'ଶୁଭଯୋଗେ ସତେ କଳିଙ୍ଗବିଜୟେ
ବଳିଲି ମୋ ମନ ଟଳିଲା ବଳ,
'ଦେବଦେଶେ ଆସି ଦେବ-ଅନୁଗ୍ରହେ
ଭୋଗିଲି ଏ କେଉଁ ତପସ୍ୟା-ଫଳ !
'ଏହି ତପଫଳ ଏହି "ଧର୍ମ" ବଳ
ଜୀବନର ମୋର ହେଉ ଭୂଷଣ,

'ସେହି ବନେ ପ୍ରଭୁ ଘୁଞ୍ଚାଇ ଦିଅ ହେ
ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣ କମ୍ପଣ ।'

( ୪ )

ପ୍ରିୟ ପ୍ରଶସ୍ତବେଶୀ ଧଉଳ ପାହାଡ଼,
ତୁମ୍ଭ ମୁଖ ମୁହିଁ ଦେଖୁଛି ନିତି,
ଗୌରବ ଶିଖରେ ଅନାଇଁ ଅନାଇଁ
କେତେଦିନ ମୋର ଯାଇଛି ବିତି ।
ସୁନ୍ଦର ମଧୁର ଗୋଧୂଳି-ଗଗନେ
ଦିନ କାମ ସାରି ଦିବସପତି,
ସିନ୍ଦୂର ଲହରୀ ଖେଳାଇ ପଶ୍ଚିମେ
ଅସ୍ତାଚଳେ ବେଗେ କରନ୍ତି ଗତି ।
ଗୋପାଳ କୃଷକ ସଙ୍ଗେ ଧେନୁପଲ
ଆବେଗ ହୃଦୟେ ଫେରନ୍ତି ଘରେ,
ତିମିର ବସନେ ଆବରି ଶ୍ରୀଅଙ୍ଗ,
ସନ୍ଧ୍ୟାଦେବୀ ବିଶ୍ୱେ ଆସନ୍ତି ଖରେ ।
ମୁହିଁ ବସିଥାଏ ଧଉଳ ପାହାଡ଼,
ତବ ଶିରେ ଶୁଣେ ବିହଙ୍ଗଗୀତି,
କାନେ ବାଜଯାଏ କେତେ ଯୁଗ ବାଣୀ
ବହିଯାଏ ପ୍ରାଣେ ଅନନ୍ତ ପ୍ରୀତି ।
ଭୁଲିଯାଏ ଆଗେ ଚକ୍ଷୁ ଖୋଲିସାଇ
ପୁଣ୍ୟ ମହିମାର ଅକ୍ଷୟ ଛବି,
ବ୍ୟାକୁଳ ପରାଣେ ଅନାଇଁ ଦେଖଇ
ବୁଡ଼ିଗଲେ ଧୀରେ ପ୍ରଶାନ୍ତ ରବି ।

ଏମ୍ବପରି ମିନା କଳଙ୍ଗ-ତପନ
ବୁଡ଼ିଗଲେ ଧନେ ଦଇଆ ଖରେ,
ଏମ୍ବପରି ମିନା କଳଙ୍ଗ-ଷାରଭ୍ରୁ
ଭସିଗଲ୍ କାଳ-ସାଗର ମାଡ଼ରେ ।
କେତେ କ ମହିମା କେତେ ଦସ୍ଯୁାକ୍ଷମା
ଦଇଆ ଗରଭେ ଯାଇଛୁ ପଶି,
ସାକ୍ଷୀ ତାର ପାଶେ ଦେବାଳୟ · ଦଣ୍ଡି
ଦୁରେ ତାର ସାକ୍ଷୀ ତପନ ଶଶୀ ।
ଆସିଥିଲେ କ ହେ ସ୍ୱପନରେ ଭସି
ସ୍ୱପନରେ ଖେଳ ଫେରିଲେ ଘରେ,
ଏବେ ଉଚ୍ଚ·ଆଶା ବାସନା କ ସତେ
ଦ' ଧନେ ବକଶି ଦ' ଧନେ ସରେ !

ପଶ-ମନ୍ଦରର ସାମନ୍ତ ବୋଳାଣ
ଭଲେ ଲଭିଥିଲେ ଗୌରବ ଟୀକା,
ମହିମା-ଉଜ୍ଜ୍ୱଳ ସେ ବରବପୁ କ
ପଡ଼ିଗଲ୍, ଶେଷ ହେଲ୍ .ସେ ଶିକ୍ଷା !
କେତେ ଜାନ୍ତି ହାତ ଧରି ଆଗେ ଚଳ
ଆଗୁଆ ହୋଇଣ ରଖିଲେ ନାମ,
ସତ୍ୟ ସାହସର ଜନମଭୂମିକୁ
ସତେ ମୋର ବଧି ହୋଇଲେ ବାମ !

ରଜା ରଜଧାମୀ ପ୍ରାସାଦ ସରଛି,
ଭସିଗଲେ ସବେ ଦଇଆ-ଜଳେ,
ଛାୟା ତାର କହେ ଭସି ନ ବୁଲଇ
ଏବେ ହେଲେ ଶୂନ୍ୟେ ଧଉଳଚୂଳେ !

କଳିଙ୍ଗରାଜ ଭୃଙ୍ଗ ମନ୍ଦର ରହିଛି,
ରହିଛି ତ ସେହି ଧଉଳଗିରି,
ରହିଛି ଅନାଇଁ ଖଣ୍ଡଗିରି-ଦଶା,
ନ ଗାଏ କି ମୁଖେ ସେ ବନ ଶିରୀ !
ନ କହେ କି ସେହୁ ହୃଦ-ବିଦାରଣ
କଳିଙ୍ଗ ପୁରାଣ-ମହିମା-କଥା ?
ଅତୀତ କାଳର ଗୌରବ ବଖାଣି
ନ ଆଣେ କି ପ୍ରାଣେ ଦାରୁଣ ବ୍ୟଥା ?
ପ୍ରତି ଶିଳାଖଣ୍ଡେ ପ୍ରତି ଝାଟିମୁଣ୍ଡେ
ନ ଅଛି କି ଗୁପ୍ତ ଜୀରନ୍ତରାଜ ?
ଏତେ ଥାଇ ଥାଇ ଏତେ ଦେଖି ଦେଖି
ଏ ଦେଶ ପତନ ନ ଯାଏ ଲାଜ !
କହ ତେବେ ମୋତେ, ଧଉଳ ପାହାଡ଼,
କହ ଭଲ କାରେ ମୋ ମୁଖ ଚୁହିଁ,
ଧଉଳ ଦେଶରେ ହେ "ଧର୍ମ" ଜୀବନ
ଆସିବ କି ଆଉ ଆସିବ ନାହିଁ ?

---

# ଯୁଗାବତାର

( ସ୍ୱର୍ଗତ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ବି. ଏ. )

ଦୁଷ୍କୃତି ବିନାଶ, ସନ୍ଥଜନ-ପରିତ୍ରାଣ—
କାରଣେ ଧରାରେ ଅବତରି ମହାପ୍ରାଣ,
ସ୍ୱର୍ଗର ବାରତା ଘେନ, ଅହେ ଦେବଦୂତ !
ପୁଣ୍ୟଭୂମି ଭାରତକୁ କରିଅଛ ପୂତ ।
ଧର୍ମ ସଂସ୍ଥାପନ ହେତୁ ଯୁଗେ ଯୁଗେ ଯହିଁ
ଅବତରି ଐଶୀ ଶକ୍ତି ଉଚ୍ଛ୍ୱାସଇ ମହୀ ।
ସବ୍ୟସାଚୀ କରିଅଛ ସ୍ତମ୍ଭିତ ଜଗତ,
ଲଭିଛ ତପସ୍ୟା ବଳେ ଅସ୍ତ୍ର ପାଶୁପତ,
ଅଜେୟ ଅହିଂସା-ବାଣ, ମହାଶକ୍ତି ଧରି
କରେ ଶତ୍ରୁ ସମ୍ମୋହନ କଲ୍ୟାଣ ବିତରି ।
ଭାରତର ଯେତେ ଦୁଃଖ, ଯେତେକ ବେଦନା,
ଯେତେକ ଆକାଙ୍କ୍ଷା, ଆଶା, କର୍ମ ବା ସାଧନା,
ଯେତେ ଭୂତ, ଭବିଷ୍ୟତ, ଯେତେକ ଅଜ୍ଞାତ
ଠୂଳ ହୋଇ ତୁମ୍ଭଠାରେ ହେଲା ରୂପାୟିତ ।
'ବିପଦ' ପାରନି କରି ଚିତ୍ତକୁ ଦୁର୍ବଳ,
'ଭୀତି' ହରି ନାହିଁ ତବ ହୃଦୟର ବଳ ।
ଛୁଇଁନି କଳ୍ପନା ସୀମା କେବେହେଁ 'ହତାଶା',
ନୁହେଁ କି ବ୍ୟର୍ଥତା ଭୀରୁ କାପୁରୁଷ ଭାଷା !
ଜାଣିଛ ନିଃସଙ୍ଗ କର୍ମେ ନାହିଁ ପରାଜୟ,
ଉଚ୍ଚିଲ କଣ୍ଠରେ ଯେଣୁ ଜୀବନ୍ତ ପ୍ରତ୍ୟୟ ।

ହେ ମୋହନ, କି ମୋହନ ମନ୍ତ୍ର ଦେଇ ଗଲ,
ଭାରତର ବକ୍ଷେ ଦେଲ ଅଗ୍ନି-ଶିଖା ଜାଳି,
ଜଗାଇଲ କୋଟି କୋଟି ପ୍ରାଣେ ଉଦ୍ଦୀପନା
ଖେଳିଗଲା ସାରାଦେଶେ ତନ୍ତ୍ର ଉନ୍ମାଦନା ।
ତୁମ୍ଭର ସାଧନା ଫଳେ ଆହେ ଭଗୀରଥ,
ପ୍ରେମ-ମନ୍ଦାକିନୀ-ଧାରା-ପ୍ଲାବିତ ଭାରତ,
ହିମାଚଳୁ କୁମାରିକା ଅଖଣ୍ଡ ମଣ୍ଡଳେ,
ମହାମୁକ୍ତି-ମନ୍ତ୍ର କର୍ଣ୍ଣି ଉଠିଲା ଉଚ୍ଛଳେ ।
ବିନ୍ଧ୍ୟଗିରି ଶୃଙ୍ଗେ ତାର ମନ୍ଦ୍ର ପ୍ରତିଧ୍ୱନି,
ଗମ୍ଭୀରେ ଉଠିଲା ଗର୍ଜି ବିବାଦ ଅଶନି,
ଗହନ ମାନବଧର୍ମ ଆଚରି ଆପଣେ,
ଶିଖାଇଲ ମାନବର ଆଦର୍ଶ ଜୀବନେ,
ସତ୍ୟର ମହିମା ଆପେ କରିଣ ପରୀକ୍ଷା,
ଜଗତଜନଙ୍କୁ ଦେଲ ସେହି ମନ୍ତ୍ର ଦୀକ୍ଷା;
ବିଭାସିଲା ଦିଶି ଦିଶି ସତ୍ୟର ଆଲୋକ,
ଅମୃତେ ଉଠିଲେ ପୂରି ଦ୍ୟୁଲୋକ ଭୂଲୋକ,
ହିଂସାଦ୍ୱେଷତାପକ୍ଲିଷ୍ଟ ମାନବ ସନ୍ତାନ
ଲଭିଲା ପରମ ଶାନ୍ତି କରି ତହିଁ ସ୍ନାନ ।
ହେ ମହର୍ଷି, ଜଗଦ୍‌ଗୁରୁ, ହେ ମହାମାନବ,
ଅମର, ଅକ୍ଷୟ ଯଶଃ ଏ ଜଗତେ ତବ ।

———

# କାଳକାଇ

( ସ୍ୱର୍ଗତ ଡ଼କ୍‌ଟର ପଣ୍ଡିତ ଗୋଦାବରୀଶ ମିଶ୍ର, ଏମ: ଏ: )

"ଭଲ କର ନାଆ ବୁଢ଼ା ରେ ନାଉରି,
ଝିଅକୁ ମାଡ଼ୁଛୁ ଡରି,
ଗଡ଼େ ଗଡ଼ଲୋକେ ଗୁହାଁ ବସିଥିବେ
ଝିଅ ଯିବ ଶାଶୁଘର ।"

ଭଲକରି ନାଆ ବାହୁଛୁ ନାଉରି,
ଡଲେଇ କରିଛୁ ଠିଆ;
ମାମୁ ଭଣଜାର କଣ୍ଠରୁ ଆସେ ଲୋ
ବୋହି ସୁଲୁ ସୁଲୁ ବାଆ ।

ଦନ ଦଶ ଘଡ଼ି ହୋଇଲାଣି ଟି ଆସି
ଖରା ମାରେ ଝୁଲିଁ ଝୁଲିଁ,
ପାଞ୍ଚ କୋଶ ବାଟ ଯିବାକୁ ଅଛି ଲୋ
ବେଳ ତ ଟାଳିବ ନାହିଁ ।

ନାଉରି ବାପୁଡ଼ା କାତ ମାରୁଅଛି,
ଉଦାସେ ଗାଉଛି ଗୀତ,
ନାଆ ଉଡ଼ିଯାଏ ପବନ ପ୍ରାପ୍ତେ ଲୋ,
ଜଣା ନ ପଡ଼ଇ ବାଟ ।

ମାଆ ଭଉଣୀଙ୍କୁ ସାଥୀ ସଙ୍ଗାତଙ୍କୁ
ଝିଅ ଯେ ଆସିଛି ଛାଡ଼ି,
ନାଆରେ ବସି ସେ ତାଙ୍କରି କଥା ଲୋ
ଭୁଏ ନିରନ୍ତର ଭାଳି ।

ମାଆ ଭଉଣୀଏ ସାଥୀ ସଙ୍ଗାତ ସେ
ରହିଲେ ଦୂରସ୍ଥେ କାହିଁ ?

ପରତେ ନୋ'ନ୍ତି, ଆଉ କ ଦିନେ ଲୋ
ଫେରି ସେ ଦେଖିବ ଯାଇ ।
ନାଆ ଭୁଲିଅଛୁ ଭବନ ସମାନେ,
ମୁହୂର୍ତ୍ତେ ନ ହୁଏ ଥୟ,
ଚନ୍ଦ୍ରା ଯେତେ ତାର ବଣ ପାହାଡ଼ ଲୋ
ଅନାଇ ଦେଖନ୍ତା କିଏ ।
ଘଣ୍ଟିଗଲା ଶିଖେ ତୃଣ୍ଣି, ସେ କହନ୍ତା,
"ବିଅ ରେ ମେଲାଣି ମୋତେ
ଛୋଟ ଆଉ ଦିନେ ନୋହିବ ଜୀବନେ
ଯାଉଛି ଘୋର ବନସ୍ତେ ।"
ସାଳିଆ ନଈ ତା ନିତି ଦିନ ସାଥି,
ସୁଖେ ବୁଲୁଥାଏ କୂଳେ;
ବେଳେ ସୁଏ ତାର ସ୍ନାହାନ ସାରି ଲୋ,
ଦର୍ପି ଲେଉଟଇ ଦରେ ।
କାଳ ଅନ୍ଧାରୁ ସେ ଭୁଲି ଯେ ଅଇଲା;
ଦେଖି ତ ନାଇଁଟି ତାକୁ
ଘରି ଖ୍ୟାତ ନଈ, ନାଆଟି ତାର ଲୋ
ଭିନ କୋଉ କୋଣେ ଥାକୁ ।
ମାଆ ଭଗବତୀ ପୀଠକୂଳେ ତାର,
'ଜଗତ ତାରଣୀ' ନାଆଁ,
ଡାକ କହିଥାନ୍ତା, ନୋହିଲା ଆଉ ଲୋ,
"ସାହା ମୋ ଅଛୁଟି ମାଆ" ।
ନାଆ ଆସି ହେଲା ଦଣ୍ଡକ ଭିତରେ
ଚଢ଼େଇହଗାର ତଳେ,
ଦଣ୍ଟିଗଲା ଆଉ ନ ଦିଶେ ଲୁଚି ଲୋ
ରହିଲା ସାଳିଆ କୂରେ ।

ଝୁହୁଁ ଝୁହୁଁ ଆସି ପହଞ୍ଚିଲା ନାଆ
ମଝି ଖାଲକାରେ ପୁଣି,
ଝିଅର ଆଖିରୁ ଝରଇ ଲୁହ ଲୋ,
ଭକ୍ତ ପିଲା ଚୁପ୍ କାନ—
"ପାରିକୁଦ ବୋଲି ସାଇଜ ପୁଣି ସେ
ଖାଲକା ମଝିରେ କାହିଁ;
କେମନ୍ତେ ମୁରୁଛିଲ ଝିଅକୁ ବାପା ହେ,
ଏତେ ଦୂରେ ଦେବାପାଇଁ ?
ବର ବୋଲି ଯାର ଧରାଇଲ ହାତ
କି ତାର ଦେଖିଲ ଶିରୀ
ରୂପ, ବିଦ୍ୟା ଆଉ ବିଭବ ବାପା ହେ,
ଦେଖିଏ ଡେଙ୍ଗିକି ବଳି ।
ମନ୍ତ୍ରୀମଣ୍ଡଳେ ତ ଥିବ ନାହିଁ ଜଣେ
ମୋ ଭଳି ନରେଶ ଜନ,
ଏ ମହା ସମୁଦ୍ର ମଝିରେ, ବାପା ହେ,
କେମନ୍ତେ ବଞ୍ଚିବ ଦିନ ।
ଏତେ ଅନୁମାନ କରିବାକୁ ଯେବେ
ମନରେ ଥିଲା ବିଚାର,
ଏ ଲୁଡ଼ଶାଳେଟି କପାଇଁ, ବାପା ହେ,
ଚାଲି ଚାଲି ନ ପାରିଲ ?
ଝିଅକୁ ନିଷ୍ଠୁରେ ଦେଉଛୁ ପଠାଇ
ବନସ୍ତକୁ ଜାଣୁ ଜାଣୁ
କପାଳ ଆଦର ଯାଉଛି, ବୋଉ ଲୋ,
ପାସୋରି ନ ଦେବୁ ମନୁ ।"

ନାଆ ଉଡ଼ିଯାଏ ପବନ ସମାନେ
ନାହିଁ କ୍ଷଣେ ହୁଏ ଥୟ,
ଝିଅ ବସିଅଛୁ ଭୁନଟି ହୋଇ ଲେ
ନେତ୍ରୁ ବହିଯାଏ ଲୁହ ।

"ନାଆ ଗ୍ଭଲିଅଛୁ ପବନ ସମାନେ,
ନ ମାନେ ପାଣି ପଥର,
ଭୁନ ହୁଅ ଜାଇ ନ କାନ୍ଦ ଆଉ ଲେ,
ଏଇ ଦିଶିଲାଣି ଗଡ଼ !"

ଏତେ ବୋଲି, ବାପା ଝିଅର ଆଖିରୁ
ଦେଲେ ଲୁହଧାର ପୋଛି,
ଯେତେ ପର ତାକୁ ବୁଝାନ୍ତି ବସି ଲେ,
ଜାଇ ବୁଝୁ ନାହିଁ କିଛି ।
"ଭଲ କରି ନାଆ ବୁହାରେ ନାଉରି,
ଝିଅକୁ ମାଡ଼ୁଛି ଡ଼ର
ଏତେ କାଳେ ଜାଇ ନାଆରେ ବସୁଛି
ଯିବ ବୋଲି ଶାଶୁଘର ।"

ଭଲ କରି ନାଆ ବାହୁଛି ନାଉରି,
ଭିଡ଼ ମାରୁଅଛି କାତ,
ସୁଲୁ ସୁଲୁ ବାଆ ବୋହି ଆସୁଛି ଲେ,
ଜଣା ନ ପଡ଼ଇ ବାଟ ।

ନାଆ ଭସି ଆସି ଦଣ୍ଡକ ଭିତରେ
ଗଣ୍ଡରେ ପଡ଼ିଲା ଯାଇ,
ଥିର ହୋଇ ହେଲା ନାଉରି ଠିଆ ଲେ,—
କାତ ଆଉ ପାଉ ନାହିଁ ।

ଝାଲେର ଶିଖରୁ କଳା ମେଘ ଖଣ୍ଡେ
ଉଠେଇ ଆସିଲା କାହୁଁ;
ଲୁଚିଗଲେ ତହିଁ ସୂର୍ଯ୍ୟ ଦେବତା ଲୋ,
ଖବର ନ ପଡ଼ଇ ଆଉ ।
ମାଡ଼ି ଆସୁଅଛି ଅତି ବେଗେ ମେଘ
ଜଟିଆ ନାସିକ ଧରି,
ବରଷା ବତାସି ଗରଜୁ ଅଛି ଲୋ,
ଦିନ ଦିଶେ ରାତି ପରି ।
ନାଆ ଚଢ଼ିଅଛି ମଝି ଗଙ୍ଗେ ଅସି
ବୁଡ଼ିପିବ ହାଣ୍ଡି ଛତି,
ଟଳମଳ ହୋଇ ଟଳୁଛି ନାଆ ଲୋ
ନାଉରିର ବଡ଼ ଭୀତି !
"ଭଲ କରି ବେଗେ ବୁହାରେ ନାଉରି,
ନାଆ ହେଲା ଟଳମଳ
ବରଷା ବତାସି ଗରଜ ଆସୁଛି
ଝିଅକୁ ମାଡ଼ୁଛି ଡର ।"
ବରଷା ବତାସି ଗରଜ ଅସିଲା
ନାଆ ନୁହେ ଥୟ କରି
ଏକା ପବନକେ ପାହାଡ଼େ ଯାଇ ଲୋ
ପିଟି ହୋଇଗଲା ଚୂରି ।
ମେଘ ଗୁଳିଗଲା ମେଘର ବାଟେ ସେ,
ବତାସି ହୋଇଲା ଥିର,
ପଡ଼ିଗଲା ଝରି ନିର୍ମଳ ହୋଇ ଲୋ,
ପାଣି ବୁହେ କଳକଳ ।

ବାପା ପଚାରନ୍ତି ଖୋଜି ନାଉରି ରେ,
ଝିଅ ମୋର ଗଲା କାହିଁ ?
ବୁଜି ଆଖି ଠିଆ ନାଉରି ନଜେ ଲୋ
ତୁଣ୍ଡ ତା ଫିଟାଇ ନାହିଁ ।
ଚଳକା ପାଣିରେ ଦୋଳୁଛି ଲହଣୀ,
ବୋହୁଛି ଶୀତଳ ବାଆ,
ସୋର ସୋର ଖରା ଢଳି ପାଉଛି ଲୋ
ଖେଳୁଛି ସହସ୍ର ନାଆ ।
ପାହାଡ଼ ଚଢ଼େଇ ଉଡ଼ୁଅଛି ରବ,
ମନେ କି ଅଛି ତା ଯୋକା ?
ପାଣିତଳେ ଘୁଷି ବୁଲି ଯାଉଛି ଲୋ,
ଜାଇଜି ନଅଛି ଏକା ।
ବାପା ଫେରିଆସି ବୋଉଙ୍କ ଆଗର
କଥା ନ ପାରନ୍ତି କହ,
ଆରଦିନ ପୁଣି ନାଉରି ଗଲେ ଲୋ
ନାଆ ସେହି ବାଟେ ବାହି ।
କେତେଶ ବରଷ ହେଲଣି ସେ ଦିନୁ,
ଗଣି କି କହିବ କଏ ?
ନାହିଁ କହୁଛି ଆଉ ସେ କାଳ କଥା ଲୋ,
ଜାଇ ରହିଅଛି ଜଏ ।
ବାଲୁଗାଆଁ କୂଳୁ ନାଆ ଗଲା ବେଳେ
ପାରିକୁଦ ଗଡ଼ଠାକୁ,
ପାହାଡ଼ ସମୀପେ ମଣିଷ ତୁଣ୍ଡ ଲୋ
ନ ଶୁଣାଯାଏ କାହାକୁ ?

ବରଷା ବିତାଗି ଶଳକାରେ ଆଜ
ହୁଏ ନାହିଁ ଡେଙ୍ଗେଉଳା;
ଆପଦେ ବିପଦେ ଜଣା ପଡ଼ଇ ଲୋ,
ସାହା କିଏ ଥିଲା ପର ।
ନାଉରୀ କେଉଟ ପାହାଡ଼ ବାଟେ ସେ
ନାଆ ନେଇ ଗଲାବେଳେ
କାମେ ଆପଣାର ଶୁଭ ମନାସି ଲୋ
ଜୁହାର କରଇ ଥରେ ।
ଡୋଳଲେ ପାହାଡ଼ ଶିଖେ କାଳେ ଲୋକେ
ସୁନ୍ଦର ଦେଉଳଟିଏ,
ସେ ଦେଉଳେ ଅବା ରହିବ ଯାଇ ଲୋ,
ଶଳକା ମଝିରେ କିଏ ?
ସୂର୍ଯ୍ୟ ବୁଡ଼ିଗଲେ ନିଶବଦ ଯେବେ
ହୁଏ ସବୁ ସଞ୍ଜବେଳେ,
ଏକା ହୋଇ ଜାଇ, ଲୋକେ କହନ୍ତି ଲୋ,
ବୁଲୁ ଯେ ଥାଏ ପାହାଡ଼େ ।
ନେତ୍ର ବହୁଥାଏ ଲୁହ ଦୁଇଧାର
ଶୁଖି ଯାଇଥାଏ ମୁହଁ,
ହେଲେ, ତାର ହାତ୍ର, କାନ୍ଦ, କାହାକୁ ଲୋ
ନିବର୍ତ୍ତାଇ କରେ ଅସ୍ତୁ ।
କାଳିଜାଇ ବଡ଼ ପ୍ରତ୍ୟକ୍ଷ ଦେବତା,
କୋଟି କୋଟି ଦଣ୍ଡବତ,
ପାହାଡ଼ର ନାଆଁ ରଇକେ ଖ୍ୟାତ ଲୋ,
'କାଳିଜାଇ ପରବତ'

---

# ଉଦ୍‌ବୋଧନ

( ସ୍ୱର୍ଗତ ଡକ୍ଟର ପଣ୍ଡିତ ଗୋଦାବରୀଶ ମିଶ୍ର )

ତୁଙ୍ଗ-ଶିଖରୀ-ଚୂଳ,
କୁଞ୍ଜକାନନ-ମାଳ,
ପୁଣ୍ୟ ଜଳଧି-ଜଳ
ଖେଳି ଉଠେ ସଘନେ;
ପ୍ରାଚୀଗଗନ-ଶିରେ;
ଭାସି କନକ ମିରେ,
ଆସ ତପନ ଉଇଁ
ଏ ଉତ୍କଳ ଭୁବନେ । ଘୋଷା ।

ଆଜି କି ସରଗ ଛବି ରାଜେ ରୁଚିର,
କି ନବଜୀବନେ ଭରି କୋଟି ଅନ୍ତର,
କିବା ଏ ସମ୍ପଦ ଶିରୀ
ହୃଦେ ହୃଦେ ଆସେ ପୂରି,
କି ପୁଲକ-ଧାରା ଖେଳି
ଆସେ କୋଟି ବଦନେ । ୧ ।

ଆହା ଏ ଉତ୍କଳ କିବା ସରଗଭୂମି
ବିଲ ବନ ଶୈଳ-ସିନ୍ଧୁ ସୁଷମା ଦେଇ !
ଜନମି ଏ ଦେଶେ ଆଜି,
ଏ ଜନନୀ କୋଳେ ରାଜି
ଧନ୍ୟ କୋଟି ନରନାରୀ
ମର ନର ଜୀବନେ । ୨ ।

ଲଳିତ ଅନଙ୍ଗ ଯାର ପ୍ରତାପ ଧାର ,
ପୁଣ୍ୟ ତେଜେ ଧରାମୁଖ କଲେ ଉଜ୍ଜ୍ୱଳ,
ଶାସିଲେ ଅତୁଳ୍ୟ ବଳେ,
ପାଳିଲେ ସେନେହଭରେ;
ଏସବୁ, ଓଡ଼ିଆ ଧନେ
ଦେଖିନ୍ତ ହେ ନୟନେ । ୩ ।

ବିପୁଳ ଓଡ଼ିଆ ସେନା ବାହୁ ବିକ୍ରମେ
ହିମାଚଳ ଚୂଡ଼ୁଁ ଧନେ କୁମାରିକା ଯାଏ
ହୃଦୟ ଶୋଣିତ ଢାଳି,
ଦେଇ ନିଜ ଶିର ବଳି
କୀର୍ତ୍ତିଧ୍ୱଜା ଉଡ଼ାଇଲେ
କି ପୁଲକ ଚିତ୍ତେ । ୪ ।

ବାରବାଟୀ ଦୁର୍ଗେ ଯାର ଓଡ଼ିଆ ସୁତ
ଶତ ଶତ୍ରୁ ସେନା ନାଶି କିବା ମହତ !
ଭାଙ୍ଗିଛି ସେ ବାରବାଟୀ,
ସେ ଶିରୀ ଯାଇଛି ତୁଟି;
(ତେବେ) ରହିଛି ସେ ଯଶ ମିଶି
ଜଳେ ସ୍ଥଳେ ପବନେ । ୫ ।

• କୋଣାର୍କ-କୀର୍ତ୍ତି-ସଉଧେ ଉତ୍କଳ-କୀର୍ତ୍ତି
ଧନେ ଧନେ ଆଜ କିବା ବିକଶେ ଫୁଟି,
ନୀଳାଚଳେ ଜଗନ୍ନାଥ
ଯୁଗେ ଯୁଗେ ବିରାଜିତ,
ଉତ୍କଳ ମହିମା-ଘୋଷ
ଏ ଭାରତ ଭୁବନେ । ୬ ।

ବିମଳ-ଚିଲିକା-ବକ୍ଷେ ଖେଳନ୍ତୁ ସେ ବୀଚି
ଉଠୁ ମହୋଦଧି-ବାରି ଅମୃତ ସିଞ୍ଚି;
ମହେନ୍ଦ୍ର ଶ୍ୟାମଳ ଚୂଳେ,
ପୂତ ଚିତ୍ରୋତ୍ପଳା ନୀରେ,
ଉଡ଼ନ୍ତୁ ସେ ସମ୍ପଦ ଶିଖା
ଗ୍ରାମ ଶୈଳ କାନନେ । ୭ ।
ତୋ ଭଳି ଜନନୀ ଥାଉଁ, ଜନମଭୂମି,
କି ଦୁଃଖେ ଏ ଓଡ଼ିଆର ପରାଣେ ପୁଣି ?
ମୋହନ ମୂରତି ସେହି
ଦିଅ ଗୋ ମା ଆଜି ଫେରି,
କୋଟିଏ ସନ୍ତାନ ତୋର
ପ୍ରଣମୁଁ ଏ ଚରଣେ । ୮ ।



# ସମରସଜ୍ଜା

( ଡକ୍ଟର ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସ, ଏମ୍. ଏ. )

( ରାଗ—ରାମକେରୀ )

ଫିଟି ଆସୁଅଛି ଗଗନେ ନବ ସିନ୍ଦୁର ରବିର
ଫୁଟି ଉଠିଅଛି ବପିନେ ଶୁଭ ସଙ୍କେତେ ଦିବା ।
ଚଟୁଚଞ୍ଚଳ ଘୁଡ଼ ଅନ୍ଧାର ଲୁଚି ଯାଉଛି କାହିଁ;
ବାଲୁକା-ବିତାନେ ପବନ ସୁଖେ ଯାଉଛି ବହି ।
କୁଟଜ ବିଭାସେ ଦୋଳଇ ବନ-ଧବଳ-ଶିଖା;
ଅନୁରାଗ-ରଙ୍ଗେ ଗୋଲାପେ ହସି ଉଠେ କଳିକା ।
ଶାରଦ ଶିଶିର-ସ୍ଫଟିକ ବିନ୍ଦୁ ପଡ଼ଇ ଧୀରେ,
ମୁକୁଳିତ ଫୁଲ ଦୋଳଇ ସ୍ୱଚ୍ଛ ଶିଶିର ଶିରେ ।
ଧୀରେ ଚହଟଇ ସମୀରେ ପୁଷ୍ପ-ମୋହନ ବାସ,
ଅନୁରାଗ ସେ.କ ବିକାଶେ ଲଜ୍ଜା ଭେଦି ସୁହାସ ।
ରାତି ଥାଉଁ ଉଠି ଭ୍ରମର ମଧୁ ଗୁଞ୍ଜନେ ବୁଲେ,
ବସି ପଡ଼େ କେବେ ଭ୍ରମରେ ମୁଗ୍ଧ କଳିକା ଚୂଳେ ।
ମଥା ପୋତିଦିଏ କଳିକା ଭୃଙ୍ଗ ତଳ ପଡ଼ଇ,
ଉଡ଼ଯାଏ ପୁଣି କ ରଙ୍ଗେ ପଡ଼ ନ ଜୁଲି ମଣ୍ଡି ।
ଶ୍ୟାମ ତରୁଶାଖା-ବ୍ୟଜନେ ହଲେ ସମୀର ସଙ୍ଗେ,
ମୋହନ କୂଜନେ ପତତ୍ରୀ ଧୀରେ ଉଡ଼ଇ ରଙ୍ଗେ ।
କେଦାରେ କେଦାରେ ଫୁଟିଛି ସ୍ୱର୍ଣ୍ଣ ଶସ୍ୟ-ବିତାନ,
ଦିଗନ୍ତ ବିସ୍ତାରେ ଉଜ୍ଜ୍ୱଳ ଦିଶେ ବର୍ଣ୍ଣ ମୋହନ ।

ପୁଣ୍ୟ ଏ ବିଶାଳ ବିତାନ ଗୃହେଁ ରହିଛି ଆଜ,
ଶରଦ-ବିମଳ ମୁକୁରେ ଶୁଭ୍ର ଲପନ ମାଜ ।
ଗ୍ରାମ ଗୁଡ଼ି କାହିଁ କୃଷକ ଯାଉ ନାହିଁ ତ ବିଲେ;
ସୁକୁମାରୀ ଲତା ଗୋଲାପ ମୃଦେଁ ମାରସ ଫୁଲେ ।

ସରଳା କୃଷକ କୁମାରୀ ଜପବନେ ବାହାରି,
ରଙ୍ଗରସ ଖେଳ ବିହାରେ ନ ଦେଖନ୍ତି ମାଧୁରୀ ।
ପ୍ରଜାପତି ଧାଏଁ ଏକାରେ ବସି ବସି ସୁମନେ,
ଚଟିଚ ଧାଇଁବାକୁ ନାହାଁନ୍ତି କେହି ଆଜ ସେ ବନେ ।

ଆଧା ସେ ବସିଲି ବଢ଼ାଇ କୁଞ୍ଜବନ ବିଭୂତି !
ଚନ୍ଦ ଭେଦି ପଡ଼େ ଆତପ ତହିଁ ନାହିଁ ସେ ଜ୍ୟୋତି ।
ଗ୍ରାମେ ଗ୍ରାମେ ଆଜ ଖୁଭଇ ନବ ଗହଳ ଲୀଳା,
ସରଳ ଉତ୍ସବ-ଆମୋଦ ଭାଙ୍ଗି ପଡ଼ଇ ଧରା ।
ଖଡ଼ଗ କାଢ଼ି କେ ପରଖି ଦେଖି ରଖେ ଆବର;
ଧନୁ ଦେଖି କେହୁ ରଖୁଛି ଶର ତୂଣୀର ଭରି ।

ବିଦାୟ ସମ୍ଭାଷେ କେ ପୁଣି କରୁଅଛି ସମ୍ଭାର;
କୁଶଳ କରମ ବଖାଣି କହେ କେ ପୁଣି ବୀର ।
ଖାରବେଳ ଗାଥା ମିଶିଛି ଠାବେ ଠାବେ ସଗରେ;
ଗ୍ରାମପତି ଅଶ୍ୱ ବାଛନ୍ତି ଗ୍ରାମ-ସୀମାନ୍ତ ଭାଗେ ।
କଦମ୍ବ ଚଳାଇ କେ ଯୁବା ଖଣ୍ଡେ ଯାଉଛି ଚାଲି;
କହୁଛି, ଚାଲିବ ସଇନ ପ୍ରାଣ ପୁଲକେ ଭରି ।
ତାହୁଁ ମିଳିଲେ ଯୁବକ ଘାତ୍ରବର୍ଣ୍ଣେ ସମ୍ବର;
ତୈଳ-ମଣି-ଯୁତ-ମୁକୁଟ-ଦୀପେ ଆବରି ଶିର ।
ବାଳଭାନୁ ପରି ବଦନ ଦିଶେ ଶ୍ମଶ୍ରୁ ବିହୀନ,
ନବ ରବି ତେଜେ ଖଡ଼ଗେ ଜକଜକେ ରତନ ।

ଦେଖିଲେ ସରବେ, 'ମଣିଲେ, କାହିଁ ବିଜୟୀ ବୀର
ମିଳିଲେ, ଉଠିଲା ଚହଳେ ଜୟଧ୍ୱନିର ରୋଳ ।
ପୁଲକେ କୃଷକ ସଇନ ସାଜେ ପଡ଼ିଲେ ଦାଣ୍ଡେ
କନ୍ଦମ୍ବେ କନ୍ଦମ୍ବେ ଖୁଲିଲେ ଭେଦ ଚଣ୍ଡମାର୍ତ୍ତଣ୍ଡେ ।
ଜୟ ଜୟ ରବେ ଧ୍ୱନିଲା ପ୍ରତିଧ୍ୱନି ବିପିନେ,
ତରଙ୍ଗେ ଥର ସେ ଉଠିଲା ସିନ୍ଧୁ ନଦୀ-ପୁଳିନେ ।
ସରମ ସମୀର ବିତାନେ ଭସିଗଲା ସେ ଧ୍ୱନି,
ସମର-ଇଙ୍ଗିତ ଚହଳେ ଫାଟି ଉଠେ ଅବନୀ ।
ଫାଟି ଉଠେ ପୁଣି କୃଷକ ହୃଦ ଆଶା-ଉନ୍ମାଦେ,
ସ୍ୱାଧୀନତା ଆହା ସେ କିବା ଅନୁମାନର ସ୍ୱାଦେ ।
ଦଶଖୋଲେ ନାଦେ ପବନ, ଫିଟି ପଡ଼ିବ ବୋଲି,
ଉଷାମୁଖେ ଭୁଟେ କାଳିମା, ଦିନ ଆସଇ ମାଡ଼ି ।.
ଖ୍ରୀମବାଟ ସନ୍ଧ୍ୟା ବୋଇତ ଯାଏ ସିନ୍ଧୁ ଗରଭେ
ସାଧକ ଇନ୍ଦ୍ରିୟ ଚାନ୍ଦ୍ରନା ସନ୍ଧ୍ୟା ଉଠେ ଗରବେ ।
ଆଶାରେ ପିନା ଏ ବିଳାପ, ବେଗେ ଶାନ୍ତ ପବଣ,
ଆଶାରେ ବଦ୍ଧ୍ୟନ୍ତ-ଆରବେ ଉଠେ କୃଷକ ପ୍ରାଣ ।



# ଗୋପ-ପ୍ରୟାଣ

( ଓ଼ଙ୍କାର ମାନ୍ଧାତାର ମାନସିଂହ )

( ୧ )

ମହାବୀର ମହା ପ୍ରୟାଣ ରଚିଲା ଆଜ
ତା' ମହା ଜାତିର ଗର୍ବ ଗଲା ସେ ଭାଜ ।
ଅମାନିଶା ତାର ସ୍ମୃତିରେ ଅଛି ରହି
ପ୍ରତି କରେ କରେ ପତାକା ଯାଉଛି ନଇଁ,
ପ୍ରତି ହିଆ ଘେରି ଘୋଟିଛି ଅନ୍ଧକାର
ଅଧରେ କେବଳ ତାରି ନାମ ଉଚ୍ଚାର,
ଘରେ ଘରେ ଉଠେ କ୍ରନ୍ଦନ ରୋଳ ବାଜ
ବିରାଟ ଓଡ଼ିଆ-ଜାତି ମଥାମଣି
ଭୂତଳେ ଖସିଲା ଆଜ ।

( ୨ )

ନଗରେ ନଗରେ ନାଗରିକେ ଆଜ
ନୟନେ ଅଶ୍ରୁ ଭରି
ଆସ ହେ ସକଳେ ରାଜପଥ ପରେ
ଚରଣ ନଗ୍ନ କରି
ମଥା ନତ କରି ସମ୍ମାନ କର
ସ୍ୱର୍ଗତ ମହାଜନେ
ତୁମ ମେଳେ କହ ଅଛି କା' ଆଉ
ତାହାପରି ଆଉ ଜଣେ ?

ରାଜା ଆସ, ଆସ ଧନିକ, ବଣିକ
ସୁଭଗ ସୌଦାଗର,
ଆସ ଋତ୍ୱିକ, କୃଷକ, କ୍ଷତ୍ରୀ,
ଶବ ସାଥିରେ ତାର ଚଳ;
ବ୍ରାହ୍ମଣ ଗାଅ ମରଣ-ମନ୍ତ୍ର
ଜନତା ଧର ହେ ପାଳ
ଜନପଦ-ବାସି, ଖୋଲ କରତାଳେ
ଗମ୍ଭୀରେ ଦିଅ ତାଳ;
କୁଳବଧୂ ସବୁ ତୁଳ ହୁଅ ଆସି
ଗବାକ୍ଷ ଘୁଡ଼ା ଧରି
ତାର ପ୍ରାଣପ୍ରିୟ ମାଟି ପରେ ତବ
ଅଶ୍ରୁ ପଡ଼ୁ ହେ ଝରି ।
ଆସ ସନାତନୀ, ଅାସ ଖ୍ରୀଷ୍ଟାନ,
ଆସ ହେ ମୁସଲମାନ,
ଜାତିର ରାଜାକୁ କ୍ଷୁଦ୍ରତା ଭୁଲି
କର ଥରେ ସମ୍ମାନ ।
ଧର୍ମ ଭୁଲି ସେ ଦରିଦ୍ରମୁଖେ
ଅନ୍ନ ଦେଇଛନ୍ତି ଆଣି
ସବୁଜ ଦୁଃଖକୁ ନିଜ ଦୁଃଖ କରି
ଚକ୍ଷୁ ଦେଇଛନ୍ତି ପାଣି ।
ସେ ଥିଲା କୋଟିଏ ଦରିଦ୍ର ମେଳେ
ଦରିଦ୍ର-ନାରାୟଣ
ତାହାଠାରୁ ବଳି ଅଛି କିଏ କହ
ତୁମର ପୂଜ୍ୟଜନ ?

ଶିବ ପଛେ ତାର କୋଟି ମସ୍ତକ
ନୁଆଇଁ ଓଡ଼ିଆ ଜାତି
ସମ୍ମାନ କର ତାରେ, ଯେ କରିଲା
ପୁଣ୍ୟ ତୋହୋର ମାଟି ।
ବାଜୁ ଖୋଲ ତାଳ ବରବଧୂ ସବୁ
ତେଜ ହେ ଅଶ୍ରୁ ନୀର
ମରଣ ଜାଣୁ ହେ, କେତେ ପ୍ରିୟ ଥିଲେ
ଆମର କର୍ମବୀର

( ୩ )

ଠିଆ ରହ ଏବେ ନିଖିଳ ଓଡ଼ିଆ ଜାତି
ସେନାପତି ତୋର ଚାଲିଗଲା ପରା
ଶୂନ୍ୟ କରି ଏ ମାଟି ।
ମରଣେ ପଶୁର କି ମନ୍ତ୍ର ଗାଇ
ଘେନିଗଲା ପ୍ରିୟଜନ
କପାଁଇ ନେଲା ସେ ? ନିଷ୍ଠୁରେ ତାକୁ,
ପଶୁର ଲକ୍ଷ ଜନ ।
ଜଣକର ନୁହେ, ଦେଢ଼କୋଟି ଲୋକ
ହୃଦୟ ଜ୍ୟୋସ୍ନା, ତାରେ
ଘେନିଗଲା, ଏକ ନିଖିଳ ଜାତିରେ
ଭସାଇ ନିର୍ବିଗ୍ନରେ ।
ଦେଢ଼କୋଟି ଲୋକ ନୟନେ, ମରଣ
ଶକ୍ତ ବିଳାପ ଶୁଣି
ଅନୁତାପ କରୁ ନିର୍ଦ୍ଦୟ ତାର
ଚପଳ-ବୁଦ୍ଧି ପାଇଁ ।

ଯଦି ରେ ଓଡ଼ିଆ ପ୍ରିୟଜନ ପାଇଁ
ବିଳାପ କରିବା ଜାଣ
ଅତି ପ୍ରିୟଜନ ବିରହରେ ଆଜ
ଫାଟୁ ତୋ ରୁଦ୍ଧ ପ୍ରାଣ ।
କେଦାରେ କୃଷକ ଠିଆ ହୁଏ ଶୁଣି
କ୍ରନ୍ଦନ ଗଗନରେ,
କୃଷକର ସଖା ଚାଲି ଯେ ଗଲାଣି,
ହାହାକାର ଘରେ ଘରେ ।
ବ୍ରାହ୍ମଣ ଆଜ ତେଜ ଆସ ତବ
ଦେଖିଲ ଅନ୍ଧକାର,
ଦେବତା ଯେ ଏହି ଚାଲିଗଲି ପଥେ,
ଅର୍ଚ୍ଚନା କର କା'ର ?
ଯିଏ ଯହିଁ ଅଛ ପଥେ ଠିଆ ହୁଅ
ନିଖିଳ ଓଡ଼ିଆ ଜାତି
ଚାହିଁ ସେନାପତି କାହିଁ ଗଲ ତବ
ଶୂନ୍ୟ କରି ଏ ମାଟି ।

( ୪ )

ସେନାପତି କପାଁ ଭୁଆଁଇଲ ତରବାରି ?
ପ୍ରତିଜ୍ଞା ତା'ର ଶେଷ ନ କରି ସେ
ଦେଲି ଗୃହ ଅଭିସାରି ।
ଦେଖେ ତ ଲଭିନ ଶରଦାନ ଲାଗି
ଅନ୍ତର ହାହାକାର
ସେ କପାଁ ଚଳିଲ ନ କରି ତାହାର
ସମୁଚିତ ପ୍ରତିକାର ?

ଓଡ଼ିଶା ଆଜିର ଦେଶେ ଦେଶେ ପାଏ
ଅଧମର ଅପମାନ
ଦେଢ଼ କୋଟି ଲାଗି ଦେଶେ ଦେଶେ ବୁଲି
ଆଣିବ କେ ସମ୍ମାନ ?
ଦେଢ଼ କୋଟି ମେଳେ ଗୋଟିଏ ତ ତାଙ୍କୁ
ବାନ୍ଧୁଥିଲୁ ସାର କରି
ସବୁ ମାୟା କାଟି ଶରନ୍ଧନ ଲାଗି
ସେହି ପୁଣି ଗଲା ଚଳି !
କାହାକୁ ଚାହିଁଲା ନାହିଁ ନିଷ୍ଠୁର,
ରହିଲା ତାହାର ଜାତି
ରହିଲା ତାହାର ପ୍ରିୟ ବନ-ବିଲ
ରହିଲା ତାହାର ମାଟି !
ଆମ ଲାଗି ପର କଥାକେ କଥାକେ
ଲୁହ ବହିଯାଏ ତାର
ପାଷାଣ ପରି ସେ ଦେଖୁଛୁ କପରି
ଆମର ଅଶ୍ରୁ ଧାର !
ଦେଢ଼ କୋଟି ଲୋକ ଭଲ ପାଉଥିଲେ
ପରାଣରୁ ବଳି ପରା,
ସକଳେ କରିଲା ଆଶ୍ରୟ-ହୀନ
ସହସା ତେଜି ଏ ଧରା !
ତାହା ଇଙ୍ଗିତେ ତିନକୋଟି ଆଖି
ଚାହିଁଥାଏ ଅହରହ
ସେ ତ ଗଲା ଚାଲି ମୂଢ଼ ଜନତାରେ
ଚଳାଇବ କିଏ କହ ?

ଦେଶ ଦେଶ ବୁଲି ଆଣୁଥିଲା ଘରେ
ଅନ୍ନ ଆମର ପାଇଁ
ବୁଝୁନ୍ତୁ ସବୁ ତା ବନ୍ଧନା କି ହେବୁ,
ସେ କଥା ବୁଝିଲା ନାହିଁ ?
ଏଇ ମନେ ଥିଲା ? ତେବେ କାହିଁ କହ
ଏତେ ଲୀଳା ଥିଲା କରି
ପ୍ରିୟଜନ ପରି ଟିକିଏ ବାଧିଲେ
ଅଶ୍ରୁ ପଡ଼ିବ ଝରି !
ସବୁ ଦେଇ ସେ ଯେ ଦରିଦ୍ରତର
କରିଛି ଲକ୍ଷଜନେ,
ସେ କଥା ସେ ଜାଣେ ? ଜାତି ମରିଯାଏ
ଜଣକର ଏ ମରଣେ !
କାହିଁ ବୁଲିଗଲ ଆହେ ପ୍ରିୟତମ
ନାଖିଲଚନ୍ଦ୍ର ଦାସ
ତୁମ ଗୁଣଯାକ ଗୁଣି ହୋଇ ମନେ
ବେଦନା ଉଠୁଛି ଶ୍ୱାସ ।

( ୪ )

ଜଗନ୍ନାଥର ସିଂହ ଦୁଆରେ
କିଏ ଅଛ ପ୍ରଭୁଦାସ
ପଥ ଛାଡ଼ିଦିଅ ଯାଉଛି ଦେବତା
ଶ୍ରେଷ୍ଠ ମୋ ପୂଜାଦାସ ।
ଗରୁଡ଼ର ପଛେ କେ ଅଛ ଭକ୍ତ
ଆଡ଼ ହୋଇଯାଅ ଭାଇ
ଭକ୍ତର ରଜା ଆସୁଅଛି ପରା
ଦେବତା ପୂଜିବା ପାଇଁ ।

ଧାର୍ମିକ ସବୁ ନିଜ ସୁଖ ଖାଲି
ଦେବତାରେ ଅଛ ମାଗି
ପରସୁଖ ପାଇଁ ସେ ଡାକନ୍ତି ତାର
ଦେବତା ଘୁମ୍‌ଭି ଜାଗି ।
ଘରେ ପଡ଼ୋଶୀରେ ମମତା ଦେଇ ସେ,
ପୂଜିଲା ତା ଭଗବାନ
ଦେଢ଼କୋଟି ନର ମଙ୍ଗଳ ଲାଗି
ପୂଜନ୍ତି ତା ନାରାୟଣ ।
ବାନ୍ଧ ଛୁଡ଼ ତାକୁ ଦେବତାର ପଦେ
ଯାଉ ତା ଆତ୍ମା ମିଶି
ରନ୍ଧ୍ରବେଦୀରୁ ଦେଖୁ ସେ ତାହାର
ଜାଡ଼ି ଘରେ ଦବା ନିଶି ।
ସେହି ବେଦୀତଳୁ ଆଶିଷ ତାହାର
ଅମୃତ ସମ ଝରୁ
କହ୍ନିସିବ ତାହା ଉତ୍କଳଜନେ
ନେବେ ଅଞ୍ଜଳି ଭରି ।
ପତିତପାବନ ବାନା ଯୁଗେ ଯୁଗେ
ଶରଣ ଉତ୍କଳର
ସେହି ବାନାତଳେ ଉତ୍କଳମଣି
ଜଳୁଥାଉ ଭାସ୍ୱର ।
ପତିତପାବନ-ଦର୍ଶନବେଳେ
ନିଖିଳ ଓଡ଼ିଆ ଜାତି
ବାଇଶି ପାହାଚେ ପାଇବେ ପତିତ—
ବନ୍ଧୁ ଚରଣ ମାଟି ।

( ୭ )

ହେ କବି, ହେ ଋଷି, ବାଗ୍ମୀ ହେ, ତବ
ଚରଣେ ନମସ୍କାର
ଯେ ପଥେ ଯାଉଛ ଏଇ ମାଥେ ପଡ଼ୁ
ପବିତ୍ର ରେଣୁ ତାର ।
ପୁରୁଷୋତ୍ତମ, ତୁମ ଲାଗି ଆମେ
ଧନ୍ୟ ହୋଇଛୁ ପରା
ମରଣେ ତୁମର ତେଣୁ ହେଲାପରି
ଆଜ ଉତ୍କଳ ଧରା ।
ତଥାପି ତୁମର ମୃତ୍ୟୁ କି ଅଛି
ତୁମେ ଯେ ମୃତ୍ୟୁ- ଜୟୀ,
ଗୋଟିଏ ଯା ଥିଲ ମରଣେ ଜନ୍ମ
ଲଭିଛ କୋଟିଏ ହୋଇ ।
ଶ୍ମଶାନ ତବ ଚିତାନଳ ଧରି
ଧନ୍ୟ ଧନ୍ୟ କହେ,
ମହାକାଳ ତବ ନାମ ଶିରେ ଧରି
ପୁଲକିତ ହୋଇ ବହେ ।
ଲକ୍ଷ୍ୟଭ୍ରଷ୍ଟ ଦେବତା ଯାଗେ୍ୟ
ଖସି ଆସି ଧରା ପରେ
କର୍ମେ ବଚନେ ବନ୍ଧନ କଲ
ଅମୃତ ଜୀବନରେ ।
ଚିରଦରିଦ୍ର ଆମେ, ଆଉ ପାଇଁ
ବସିଥିଲୁ ହାତ ପାତି
ନିଷ୍ଠୁର ତୁମେ ହତାଶ କରିଲ,
କିପାଇଁ ଗ୍ଲୁଡ଼ ଏ ମାଟି ?

# ମହାନଦୀରେ ଜ୍ୟୋତ୍ସ୍ନା-ବିହାର

( ଶ୍ରୀଯୁକ୍ତ ମାୟାଧର ମାନସିଂହ )

( ୧ )

ଶିଳାଗୃହ ଅନ୍ଧକାରବାସୀ ମୁଁ ଜନନ !
ଉଜ୍ଜଳ, ନ ଥିଲ ଜାଣି, ଅଛ ଲୋ ତୋ ପୁରେ
ଏମନ୍ତ ରୂପର ଲୀଳା, ନ ବାନ୍ଧୁ ଚରଣୀ
ଆଜ ଏ ଜ୍ୟୋତ୍ସ୍ନାରେ ମିଳ ମହାନଦୀ ପୂରେ । ୧ ।
ଆହା କି ବିପୁଳ ଶୋଭା ଭାସେ ଆଖି ଆଗେ
କେମନ୍ତେ ବର୍ଣ୍ଣିବ ମୋର ମୁଗ୍ଧ ଅନୁଭବ,
ଚକ୍ଷୁ ମୋର ଅନ୍ଧ ହୁଏ ଜ୍ୟୋଛନା ପରାଗେ,
ବାଣୀ ମୋର ନାହିଁ ଫୁଟେ, ମାନ ପରାଭବ । ୨ ।
ଧବଳ-ଉତ୍ତରୀସମ ରଜନୀ-ବଧୂର
ଜ୍ୟୋଛନା ବ୍ୟାପିଛି ଦୂର ଦିଗନ୍ତ ଲାଗି,
ତଳେ ତାର ଏ ଧରଣୀ, ପ୍ରକୃତି ମଧୁର
ହୋଇଛି ମଧୁରତର ତା ପରଶେ ଜାଗି । ୩ ।
ଆକାଶର ଖଣ୍ଡସମ ମହାନଦୀ-ବାରି
ଚନ୍ଦ୍ରିକା ଚୁମ୍ବନ ପାଇ ଧବଳ-ଚପଳ,
ତରଳ ମୁକୁର ଅବା ଦେଇଛି କେ ପାରି
ଦେଖିବେ ବଦନ ନଭ-ସୀମନ୍ତିନୀ ଦଳ । ୪ ।
ଦୁଇ କୂଳେ ବୃକ୍ଷ ରେଖା ଜ୍ୟୋଛନା-ଧଉତ
ପାଣ୍ଡୁର ଆଲୋକେ ଧରି ତନ୍ଦ୍ରାଳସ ଶିରୀ
ସ୍ୱପ୍ନ-ପୁରୀ କରେ ସୃଷ୍ଟି; ଅଳସ ମରୁତ
ଜ୍ୟୋଛନା ମଦିରାମତ୍ତ ବହେ ଥିରି ଥିରି । ୫ ।

ଅଙ୍ଗେ-ଘେନି ମହାନନ୍ଦୀ-ଶୀକର କଣେକ
ଦୂରେ ଓ ନିକଟେ ଦିଶେ ନଦୀପଠା ଶତ—
ଶରବଣ ଶ୍ୟାମଚ୍ଛବି ଘର୍ଷୀକୃତ ବେକ
ବରହୀ ଚକୋର ପକ୍ଷୀ କାନ୍ଦେ ଅବିରତ । ୬ ।
ଦୂରବାଙ୍କ ନାଉରିର ସରଳ ସଙ୍ଗୀତ
ପବନେ ଆସଇ ଭାସି ନଦୀ ବକ୍ଷପରେ
କ୍ଷେପଣି ଆଘାତେ ଦେଖ ଚନ୍ଦ୍ରିକା-ରଞ୍ଜିତ—
ନଦୀବାରି, ଲକ୍ଷ ରୌପ୍ୟଖଣ୍ଡ ସୃଷ୍ଟିକରେ । ୭ ।
ପଶ୍ଚାତେ ପ୍ରସାର ନୀଳ ଶୁଭ୍ର ବାରିରାଶି
ମିଶଇ ଆକାଶତଳେ, ସମ୍ମୁଖେ ମନୋହର,
ଗମ୍ଭୀର ସୁନ୍ଦର ଗିରିମାଳା ଉଠେ ଭାସି
ଚନ୍ଦ୍ରିକା-ଚନ୍ଦନେ ଚର୍ଚ୍ଚି ନୀଳ କଳେବର । ୮ ।
ଉଚ୍ଚିଷ୍ଟ ଶିଖରିମାଳା ପଶ୍ଚାତୁଁ ଆକାଶ
ସନ୍ନ୍ୟାସିନୀ ମୁଖସମ ପ୍ରଶାନ୍ତ ଧବଳ
ତା ତଳେ ରଜନୀ-ବଧୂ ଚନ୍ଦ୍ରିକାର ବାସ
ଉଡ଼ାଇ ଧରଣୀ କରେ ପରଶେ ଉଚ୍ଛଳ । ୯ ।
ଏ ବିରାଟ ଶକ୍ତଗୃହେ ଅଛି ମୁଁ ଧ୍ୟାନ
ମୁଗ୍ଧସମ ରହେ ଗୃହୀଁ ମହା ମହିମାରେ
ଭାବଇ ବା ହୋଇ ଏହି ଜ୍ୟୋତ୍ସ୍ନାରେ ପ୍ରଲୀନ
ଭୋଗନ୍ତି ସେ ସୁଧାଙ୍କରେ ଆଜ ଏତେ ଧାରେ । ୧୦ ।

( ୨ )

ହାୟ ଲୋ ଉତ୍କଳଭୂମି, ପ୍ରକୃତି-ସୁନ୍ଦର
ମନ୍ଦାକିନୀ ସମ ନଦୀ, ମରକତ ଗିରି,
କାନନେ, କେଦାରେ ଲକ୍ଷ ଶୋଭର ବନ୍ଧର
ଥାଉଁ ତୋର, କହ କପାଁ ଏଡ଼େ ହତଶିରୀ ? ୧୧ ।

ଏ ସ୍ୱର୍ଗସୁଷମା ଯାର, କରିବ ବିଶ୍ୱାସ
କେମନ୍ତ କହ ଲୋ ତାର ଅନ୍ତର ଅଭାବ ?
ସୁର ସମ ମୁଗ୍ଧ କରେ ମୋରେ ଯା ନିଶ୍ୱାସ,
ତା ଦେହେ ସମ୍ଭବେ କାହୁଁ ଦୁର୍ଦ୍ଦିନ-ପ୍ରଭାବ । ୧୨ ।

କାନନ-ଶ୍ୟାମଳ-ବାସ, ଶିଖରି-ମୁକୁଟ,
ଚରଣ ଚୁମ୍ବଇ ମହାସାଗର ଲହରି,
ଏବେଶେ ହୁଅଇ ଯାର ମହିମା ପ୍ରକଟ,
କେମନ୍ତେ ଭାବିବି ତାରେ ଅଭିଶପ୍ତା କରି ? ୧୩ ।

ଆଜି ତୋର ଇତିହାସ ସାକ୍ଷୀ ଏ ତଟିନୀ-
ଜଳେ ମୋ ତରଣୀ ଯେବେ ଭାସିଯାଏ ଧୀରେ
ଜନନି ! ଗୌରବ ତୋର କଳ୍ପନା-ସଙ୍ଗିନୀ
ଗୋଟି ଗୋଟି ଦ୍ରୁତେ ବାଢ଼ିହୁଏ ମୋ ସ୍ମୃତିରେ । ୧୪ ।

ସେ ଦିନ ତୋ ଗିରି ସଙ୍ଗେ, ତୋର ଗଜପତି
ତୋଳିଲା ଶୃଙ୍ଗରେ ତାର ଦୁର୍ଗ ଅଭ୍ରଙ୍କଷ,
ତୋହର ଏ ନଦୀ ସମ ମହା ନରପତି
ହୃଦୟ ଉଦାର କରି ଜିଣିନେଲା ଯଶ । ୧୫ ।

ସେ ରଜା ଯାଇଛି ଚାଲି, ଦୁର୍ଗ ତାର ନାହିଁ,
ତା ସଙ୍ଗେ ଯାଇଛି ପୁଣି ସେ ବୀର ହୃଦୟ,
ତୋହରି ଅତୀତ ମାଗୋ ଆଜି ଥାଇ ଥାଇ
କରେ କ୍ରୂର ପରିହାସ ଘୋର ବ୍ୟଥାମୟ । ୧୬ ।

ତରଣୀ ଚଳଇ ମୋର ବାରବାଟୀ ତଳେ
ରହିରେ ନାଉରି, ଦଣ୍ଡେ, ଭିଡ଼ ଏଥି ତରି,
ମୋ ମଥା ଲଗାଇ ପୂତ ସୋପାନ ପ୍ରସ୍ତରେ
ହିଏ ଅପଦାର୍ଥ- ପ୍ରାଣେ କୃତକୃତ୍ୟ କରି । ୧୭ ।

ସେଦିନ ଏ ଶିଳାପଟେ ଅବଗାଢ଼ ଆସି
ସୁକୁମାରୀ ରାଜବାଳା ଅଙ୍କିଥିବ ତାର
ଲାକ୍ଷାରକ୍ତ ପଦଶୁଦ୍ଧ କରି ମଞ୍ଜୁକାଶୀ
କଠିଣ ପାଷାଣ ଦେହେ ଆନନ୍ଦ ସଞ୍ଚାର । ୧୮ ।
ସେ ଦିନ ସନ୍ଧ୍ୟାମେଳେ ରୂପସୀ ମଞ୍ଜୁଶ୍ରୀ
ଏକ କରେ ଦୁର୍ବାକ୍ଷତି, ଶଙ୍ଖ ଆନ କରେ,
ବିଜୟୀ ପୁତ୍ରର ଶିରେ ମଙ୍ଗଳ ଆଶିଷି
ବରି ନେଇଥିବେ ଗୃହେ ଏହି ଶିଳାପରେ । ୧୯ ।
ସେଦିନ ଏ ଶିଳାପରେ ନାଗରିକା ଶତ
ହରିଦ୍ରା ପ୍ରଲେପେ ରଞ୍ଜି କନକବଦନ,
ବନ୍ଧାଥିବେ ଶଙ୍ଖ ବାଜ ରାଜାର ବୋଇତ
କରିଛି ସେ ଯବଦ୍ୱୀପୁଁ ମୁକ୍ତା ଆନୟନ । ୨୦ ।
ସେଦିନ ଏ ଶିଳାପରେ ନଗର ଜନନୀ
ଏକବେ ପଠାଇ ପୋତେ ସନ୍ତାନେ ସମରେ,
ରହିଥିବେ ଦୂରଦେଶେ ସେ ବୀରରମଣୀ
ଲୁଚାଇ ଆଖିର ଲୁହ ଅପମାନ ଡରେ । ୨୧ ।
ସେଦିନ କାହିଁ ଗୋ ଶିଳା ? ଏ ଦୁର୍ଗତି-ଛାୟା
ପଡ଼ି ଏ ତଟିନୀଙ୍କଳେ ଚକ୍ରୋଶି-ଉକ୍ରୋରେ,
ଆଜଣ ଯେବେ ନଶା ସ୍ମୃତ, ଜୀବନର ମାୟା
ଏ ଜାତ ନ ଥିଲା ଜାଣି ଶ୍ୱପଣିର କୋଳେ । ୨୨ ।
ଚିର ଦିନ ପାଇଁ ସେ କି ଯାଇଛନ୍ତି ଚଳି,
ନ ଫେରିବେ ରାଜାରାଣୀ ନ ଫେରିବେ ବୀରେ
ବୋଇତ ବନ୍ଦାଣ ଲାଗି ଏ ତଟିନୀ ବାଲି
ନାଗରିକା ପଦପ୍ରାନ୍ତ ନ ଚୁମ୍ବିବ ଧୀରେ ? ୨୩ ।

ଦୁର୍ଗ ଆଜି ଉଠିବନି ? ରାଜାର ବୋଇତ
ନ ଫେରିବ ମୁକ୍ତା ଧରି ଏ ତଟିନୀ ବାହି,
ନଗରର ବଧୂ ଯେତେ ମଙ୍ଗଳ ସଙ୍ଗୀତ
ନ ବନ୍ଦିବେ ତାରେ କେବେ ମଧୁକଣ୍ଠେ ଗାଇ ? ୨୪ ।
ସେ ସୌଭାଗ୍ୟ ଶେଷେ ହାୟ ! ଏ ଜାତିର ଶେଷ
ନ କଲା ବିଧାତା କିଆଁ ? ସେ ଗୌରବ ପରେ,
ବଞ୍ଚିବା ଧରି ଏ ଖାଲି-କଙ୍କାଳ ବିଶେଷ
ବିଶ୍ବ ଆଗେ, ମରଣରୁ ଶତଗୁଣେ ବଳେ । ୨୫ ।

( ୩ )

ଏମନ୍ତ ଜ୍ୟୋତ୍ସ୍ନା ରାତେ ସେଦିନ ଏ ସ୍ଥଳୀ
କି ଶୋଭା ଧରିଥିବ ଅପୂର୍ବ କଳ୍ପନାସଜନି,
କହ ମୋତେ ! ଶତ ଶତ ନାଗରିକେ ତରୀ
ବାହି କେଳ୍ପ୍ଲେ କରୁଥିବେ ମୁଖରା ରଜନୀ । ୨୬ ।
ନୃପତିର ଗଜଦନ୍ତ ତରୀଥିବ ଆଗେ;
ମୁଖରା ଗାୟିକା କଣ୍ଠେ, ସୁଗନ୍ଧେ ଉତଲା,
ନୃପତି କୁଣ୍ଡଳମଣି ଚନ୍ଦ୍ରିକାର ରାଗେ
ଝଲସେ, କମ୍ପଇ କଣ୍ଠେ କୁସୁମର ଝରା । ୨୭ ।
ରାଜତରୀ ପାଶେ, ପଛେ, ଶତ ତରୀ ବାହି
ଚଳନ୍ତି ନଗରଜନେ ବିଳାସକୁଶଳ
ମୁଖରା କରି ଏ ନଦୀ ଉଚ୍ଚେ ଗୀତ ଗାଇ
ଉଦ୍ଧାମେ କ୍ଷେପଣ କରି ଆକୁଳ ଏ ଜଳ । ୨୮ ।
ଊର୍ଦ୍ଧ୍ୱେ ତେଣେ ଚନ୍ଦ୍ରଶାଳା ପୁରେ ରାଜରାଣୀ
ସ୍ଵର୍ଣ୍ଣଦୀପ ପଛେ ରଖି ବାତାୟନ-ମୁଖୀ

ଦେଖନ୍ତ ଏ ମହାଲୀଳା, ଫୁଟେ ନାହିଁ ବାଣୀ,
ବଦନେ ଆସେ କି ଭାଷା ପ୍ରାଣ ହେଲେ ସୁଖୀ ? ୨୯ ।
ଆନ କକ୍ଷେ ରାଜବଧୂ କୋମଳା କଣୋଗୀ
ସୁନ୍ଦରୀ ସଜନୀ ମେଳେ ଧରି ଫୁଲହାର
ଦେଖନ୍ତ ଚନ୍ଦ୍ରମା ଶୋଭା ଚନ୍ଦ୍ରମୁଖ ତୋଳି,
ଏ କାଳେ ମିଳିଲେ ପାଶେ ନୃପତିକୁମାର । ୩୦ ।
ଝରେ ବାଦ୍ୟ-ନହବତ, କମ୍ପାଇ ଧରଣୀ,
ସେ ପାର ପର୍ବତମାଳା ହୁଏ ପ୍ରତିଗିର,
ମନ୍ଦ୍ରେ ଉଠେ ଦୁର୍ଗକକ୍ଷ, ରାଜାର ତରଣୀ
ନର୍ତ୍ତଏ ଉନ୍ମାଦେ ନୀଳ ମହାନଦୀ ନୀର । ୩୧ ।
ସେଦିନ ମୁଁ ଥାଆନ୍ତି କି ରାଜନ ରହଣେ,
ତୋଷି କି ନ ଥାନ୍ତେ ଏହି-ଦରବାର ଚିତ୍ତ ?
ଗୁଣଗ୍ରାହୀ ରାଜା ମୋର ରତ୍ନ-ବିତରଣେ
ହସିଥାନ୍ତା, ହୃଦପୂର୍ଣ୍ଣ ଭରି ଗାଇଥାନ୍ତି ଗୀତ ! ୩୨ ।

( ୪ )

ଫେରିବା କହୁଛ ବନ୍ଧୁ, ପୁଣି ଅନ୍ଧକାରେ ?
ଫେରିବାକୁ ହେବ ସତେ ! ହାୟ ଏ ଜୀବନ !
ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ
ଜୀବନର ହାହାକାର, ପ୍ରାଣର ଦହନ । ୩୩ ।
ଚନ୍ଦ୍ରମା ଉଠିଛି ଊର୍ଦ୍ଧ୍ୱେ ନିରବ ଧରଣୀ
ନୀରବ, ନିସ୍ତବ୍ଧ ଶାନ୍ତ ମହାନଦୀ ଜଳ
କ୍ଳାନ୍ତ ଶିଶୁସମ ଶାନ୍ତ ! ଉଜ୍ଜ୍ୱଳ ରଜନୀ
ପକ୍ଷ ପାତି ଆବୋରିଛି ନଭ, ଜଳ, ସ୍ଥଳ । ୩୪ ।

ଏ ମହାସାଗରର ଷଣେ, ଏ ଜ୍ୟୋଛନା ତଳେ
ମୁଗ୍ଧ ମୁଁ ଅନାଇ ଏହି ବିପୁଳ ଶୋଭାରେ,
ଅନୁଭବେ ଆହା କାର ସ୍ପର୍ଶ ଏ ଅନ୍ତରେ
ବଚନୁ ଅତୀତ, ମୁହିଁ ପ୍ରଣମେ ତାହାରେ । ୩୫ ।
ସେ ଯେ ସତ୍ୟ, ଶିବ ସେହି, ଏକା ସେ ସୁନ୍ଦର,
ଭୂମା ସେ ରହନ୍ତି ପୂରି ରେଣୁ ରେଣୁ ଭେଦ,
ଅନନ୍ତ ଲୀଳାର ହେତୁ ଅସୀମ ହୃଦର
ଷଣକେ ସୃଜେ ସେ ଘୋର ମହାପ୍ରଳୟ-ବେଦ । ୩୬ ।
ବନ୍ଧୁ ହେ, ପାଇଛି ଆଜ ଏ ଆକାଶ ତଳେ
ମୋ ଜୀବ ଅତୀତ ସାକ୍ଷୀ ଏ ନଦୀ ପୁଳିନେ
ଜ୍ୟୋତ୍ସ୍ନାର ଏ ମହାଶ୍ରେଷ୍ଠ୍ୟ, ଏ ତରଣୀ ପରେ
ଜାନୁପାତି ବନ୍ଧୁ, ତାରେ ସେନ ହେ ଜୀବନେ । ୩୭ ।
ଇଚ୍ଛା ମୋ, ହୁଅନ୍ତା ଏହି ନିର୍ମଳା ରଜନୀ
ଅସରା, ମୁଁ ଖୋଜୁଥାନ୍ତି ସତ୍ୟ ଶୁଭ୍ର ତାରେ
ଏ ସୁନ୍ଦର ଜ୍ୟୋତ୍ସ୍ନାତଳେ, ବାହି ଏ ତରଣୀ
ମୃତ୍ୟୁ ପାଏ, ନ ଫେରି ସେ ମହା ଅନ୍ଧକାରେ । ୩୮ ।

---

# ହରିହର ଛତ୍ର ମେଳା

( ଶ୍ରୀ ନାରାୟଣ ମୋହନ ଦେ, ଏମ୍. ଏ. )

—୧—

ମିଥିଳା-ମହେନ୍ଦ୍ର ସୀତା-ସୀତାଙ୍କୁ ଚରଣେ
ନମିଲ କନ୍ଦୁକହରି ସଲିଲ ଯାହାର,
ସେହି ଏ ଗଣ୍ଡକ, ଧନ୍ୟ ଭୁବନରଚଣ୍ଡେ
ବର୍ଷେ ବନ୍ୟାରେ ଗ୍ରାମେ ଗ୍ରାମେ ମିଥିଳାର
ସୁଶସ୍ୟ ସମ୍ଭାର ସାର ବରଷେ ବରଷେ,
ବରୁଣଦୁଲଣି-ରମା କରୁଣା ଆସାର
ପରଶେ ହରଷରେ ରମ୍ୟ ହାର ଉରସେ
ଗ୍ଲକୁ ଚନ୍ଦ୍ରହାର ଅବା ମଧ ମିଥିଳାର ।
ଅଦୂରେ କନକମୟୀ ଶ୍ରୀଜନକପୁରୀ;
କମଳାବିଳାସଭୂମି ଯାହାର ଅଞ୍ଚଳେ,
ଯାହାର ହୃଦୟହାରୀ ହରିତ ମାଧୁରୀ
ନାହିଁ ନ ଥିବଟି କାହିଁ ଭବେ ରବତଳେ,
ଅଦୂରେ ତାହାର ସ୍ୱର୍ଣ୍ଣପୁର ଜନପଦ
ହରିହରଛତ୍ର ଯାର ସୁଯଶ ସମ୍ପଦ ।

—୨—

ଉତ୍ତରୀ ସୀମାନ୍ତ ରେଖା ମଗଧର
ଶୋଭନା ଜାହ୍ନବୀଧାର—
ସଙ୍ଗତେ ଗଣ୍ଡକ ତରଙ୍ଗ ତାଣ୍ଡବେ
ଯହିଁ ହୁଏ ଆତ୍ମହରା ।

ଯହିଁ ବର୍ଷାଗମେ ଉଚ୍ଛ୍ୱଳ ତରଙ୍ଗ
ମାଳ ଦୁଇ ତଟିଙ୍କର
ବୁଡ଼ାଏ ପ୍ରବଳ ସଲିଳ ପ୍ଲାବନେ
ବେନି ପାଶେ ବେନି ତୀର ।
ଘୋର ଘୋଷେ ଖର— ବାହିନୀ ଗଣ୍ଡକୀ
ଯହିଁ ଢାଳି ନିଜ ଅଙ୍ଗ
ତରଙ୍ଗ ସଂଗ୍ରାମେ- ମାତି ଦ୍ୱିଗୁଣିତ
କରେ ଗାଙ୍ଗେୟ-ତରଙ୍ଗ ।
ସେ ତରଙ୍ଗଲୀଳା ଦେଖୁଥାନ୍ତି ବସି
ସୁରମ୍ୟ ହର୍ମ୍ୟ-ଚୂଳ—
ମଣ୍ଡପେ ମଣ୍ଡଳୀ କରଣ ମଗଧ—
ମଣ୍ଡନା ମହିଳାକୁଳ ।
ଥିଲ ତହିଁ ଦୂର ଅଟବୀ ବିସ୍ତୃତ
ବନରାଜି ଭୟଙ୍କର,
ସେ ବନେ ବିହାର କରୁଥିଲେ ପୂର୍ବେ
ସ୍ୱର୍ଣ୍ଣପୁରେଶ ଶଙ୍କର ।
କାଳର ଦୁରନ୍ତ ଶୃଙ୍ଖଳ ଛେଦନ
କଲ୍ପନା ବିନୋଦିନୀ
ତହିଁ ଏସନ ଦୂର ଅନ୍ତରର
ଶୋଭା ସୁମନୋହାରିଣୀ ।
ବେନି ତଟେ ଗଣ୍ଡ— ଶୈଳ ବହୁଦୂର-
ବ୍ୟାପୀ ଏ ବନପ୍ରଦେଶେ,
ଭ୍ରମୁଥିଲେ ପୂର୍ବେ ଅପସରାଗଣ
ବନବିହାରିଣୀ ବେଶେ ।

ଖେଳୁଥିଲେ କେତେ  ରଙ୍ଗେ ଲୁଚକାଳି
ପୁଷ୍ପିତ ଲତା-ଗହ୍ୱଲେ
କମ୍ପି ଉଠିଥିଲା  ବନସ୍ଥଳୀ ତାଙ୍କ
ସାନ୍ଧ୍ୟ-ସଙ୍ଗୀତ-ଚହ୍ୱଲେ ।

ମଧ୍ୟାହ୍ନେ ଲତିକା—  ମଣ୍ଡରେ ସରବେ
ଲଳିତ-ଲୋଳ-ଲୋଚନା
ରତ ହେଉଥିଲେ  ବାକ୍ୟବିନୋଦନେ
ସୁରଭି-କୁସୁମାସନା ।

ଠାବେ ଠାବେ ଥିଲା  ସେ ବଲ୍ଲରୀ କୁଞ୍ଜେ
ପୁଷ୍ପିତ-ଲତିକା-ସଙ୍ଘ,
ତହିଁ ଆସି ମନ୍ଦ  ଜାହ୍ନବୀ ସମୀର
ମଞ୍ଜୁଳ କୁସୁମଗନ୍ଧୀ,
ସେବୁଥିଲା ସୁର—  ସୁନ୍ଦରୀଙ୍କୁ ସୁର—
ସତତ ସମୀର ପ୍ରାୟେ,
ଝରି ପଡ଼ୁଥିଲା  ଗଛରୁ ମନ୍ଦାର
ସେ ମନ୍ଦ ମଳୟ ବାୟେ ।

ଦୋଳୁଥିଲେ ବସି  ସଲିଳ ପରଶି
ମାଳତୀ-ଲତା-ଦୋଳନେ
ଗନ୍ଧର୍ବର ବେନ  ଘୋର ଘନ-ବନ-
ବିହାରିଣୀ ଦେବୀଗଣେ ।

ନିତି ଫୁଲୁଥିଲା  ଅସଂଖ୍ୟ ହିନ୍ଦୋଳା
ଗଣ୍ଡକୀର ବେନ ତୀରେ,
ପ୍ରତିବିମ୍ବ ତାର  ଖେଳିଯାଉଥିଲା
ମୁହୁର୍ମୁହୁଃ ନଦୀନୀରେ ।

ବେନ୍ନ ଛରେ ବେନ ·ସାଖ ହୋଇ ସୁର—
ସୁନ୍ଦରୀ ଅପସ୍‌ରଗଣ,
ହିନ୍ଦୋଳାରେ ଦୋଳ କରୁଥିଲେ ନିତି
ସାୟଂ ସମୀର ସେବନ ।
ଏ ଛାର ହିନ୍ଦୋଳା ହୁଅନ୍ତେ ସେ ଛାର
ହିନ୍ଦୋଳର ସନ୍ନିକଟ
କାନକ ଉଦ୍ଭାସି ହେଉଥିଲା ଏକ
ଅପୂର୍ବ ଶୋଭା ପ୍ରକଟ ।
ଉଲ୍ଲମ୍ଫନପଟୁ ସୁନପୁଣାଗଣ
ଯେବେ ପରମ କୌତୁକେ
ସମ୍ମୁଖୀନ ଅନ୍ୟ ଛାର ହିନ୍ଦୋଳାକୁ
ଡେଇଁ ପଡ଼ୁଥିଲେ ସୁଖେ ।
ତପ୍ତ କାଞ୍ଚନ— ବରଣାଙ୍କ ଏତୁ
ସ୍ଥାନାନ୍ତରମସ୍ତୁ କାଳେ
ଚପଳା ସ୍ଫୁରଣ ହୋଇ ଯାଉଥିଲା
ମାଳ-ବନ-ଘନ-ସ୍ଥଳେ ।
ଝରି ପଡ଼ୁଥିଲା ପୁଷ୍ପରାଜ ଯେବେ
କୁସୁମିତ ଦୋଳା ଅଙ୍ଗୁ
ଜଳଦେବୀ ତାହା— ଊର୍ଦ୍ଧ୍ୱେ ଫିଙ୍ଗୁଥିଲେ
ଉଚ୍ଛ୍ୱଳିତ ତୋଳି ତରଙ୍ଗୁ ।
ତାଙ୍କୁ ବନବାଳା— ମାନଙ୍କ ସସ୍ନେହ
ମିଳନ ସଙ୍କେତ ଜାଣି,
ସାଦର ସମ୍ଭାଷ କରିବାକୁ ସବେ
ହେଉଥିଲେ ଊର୍ଦ୍ଧ୍ୱପାଣି ।

ତରଙ୍ଗେ ତରଙ୍ଗେ ସଲୀଳ ସରବେ
କରୁଥିଲେ ଜଳକେଳି,
ସମ୍ଫୁଟିତ କରେ ଏକ ଆରେକକୁ
ମାରି ସଲିଳଧାରାବଳୀ ।

ଝରି ପଡ଼ୁଥିଲା ତୀର କଦମ୍ବରୁ
ପୁଷ୍ପରାଶି ଘନ ଘନ,
କଦମ୍ବ-କନ୍ଦୁକ ଫିଙ୍ଗି ଖେଳୁଥିଲେ
ରଙ୍ଗେ ରଙ୍ଗାଧରୀଗଣ ।

ଦରକୋରକିତ କରି କରଯୁଗ
କନ୍ଦୁକ ଧରିବା କାଳେ,
ଫୁଟି ଉଠୁଥିଲା କନକ କମଳ
ଜାହ୍ନବୀ ସୁନୀଳ ଜଳେ ।

ଭାରତେ ଏସନ ରମଣୀୟ ଦୃଶ୍ୟ
ଅତୀବ ବିରଳ ଜାଣି,
ଏ ବନେ ବିହାର କରୁଥିଲେ ପୂର୍ବେ
ସ୍ୱୟଂ ଶମ୍ଭୁ ଶୂଳପାଣି ।

ଏ ବନର ଶୋଭା ଦେଖି ପୂର୍ବେ ଦେବ—
ଗଣ ହେଉଥିଲେ ମୁଗ୍ଧ,
ହୋଇଥିଲା ଏଥି ଗଜ କଚ୍ଛପର
ପୁରାଣପ୍ରସିଦ୍ଧ ଯୁଦ୍ଧ ।

ହର[illegible]ନ୍ଦ୍ରଙ୍କ ଉଦ୍ଦେଶ୍ୟ ଜନକ—
ପୁରୀ ଗମନର ପଥେ,
ପଞ୍ଚକପୂର୍ଣ୍ଣିମା ରଜନୀ ଶ୍ରୀରାମ
ଯାପିଥିଲେ ଏ ବନସ୍ଥେ ।

ଏଥି ଏ ତଟିନୀ — ତୀରେ ଜନ୍ମ ହୋଇ
ରବି ଅସ୍ତମିତ ଦେଖି
ବିଶ୍ରମିଲେ ଯବେ ନଦୀ ପାରି ହେବା
ସଙ୍କଳ୍ପ ମନ୍ତ୍ର ଉପେକ୍ଷି ।
ସ୍ନାନ ଶୁଚି ହୋଇ ଏ ପବିତ୍ର ଗଙ୍ଗା
ଗଣ୍ଡକୀ-ସଙ୍ଗମ ଜଳେ
ସାୟାହ୍ନ ସନ୍ଧ୍ୟାରେ ବସିଥିଲେ ରାମ
ଏ ମହା ପବିତ୍ର ସ୍ଥଳେ ।
ସେ ଦିନ କାର୍ତ୍ତିକ ପଞ୍ଚକ ପୂର୍ଣ୍ଣିମା
ଧୀରେ ପୌର୍ଣ୍ଣମାସୀ ଶଶୀ,
ଉଇଁଲେ ଗଗନେ, ସ୍ଥାବର ଜଙ୍ଗମ
ପୁଲକେ ଉଠିଲେ ହସି ।
ହସିଲା ସିକତା ଶେଯ ଜାହ୍ନବୀର
ହସେ ନୀଳ ଜଳରାଶି,
କଳ କଳ ହସି ନାଚିଲା ହରଷେ
ଗଣ୍ଡକ ଗଦ୍‌ଗଦ ଭାଷି ।
ନାଚିଲ ନାଚିଲ ନାଚି ଚଳ ଊର୍ମିମାଳା
ଢଳ ଢଳ ଜ୍ୟୋହ୍ନାରେ
ଜୟ ଜୟ ଗୀତ ଗାଇଲେ କି କଳ —
ନାଦମୟ ଜଳ-ବୀଣାରେ ।
ରଘୁକୁଳ ଅଳ— ଙ୍କ କଳାନିଧି
ସେବିଲେ ଜାହ୍ନବୀକୂଳେ
ଧ୍ୟାନ ନିମଗନ ଥିଲେ ଶିବାଳୟ
ସମୀପ ଶ୍ରୀଫଳମୂଳେ ।

ଇନ୍ଦୀବରଚକ୍ଷା            ମନ୍ଦଳିଲ ବଦନ
ପୂର୍ଣ୍ଣେନ୍ଦୁ କରଣେ ଝଲ
ଇନ୍ଦୁମାଳ ଚନ୍ଦ୍ରା—            ଦଶା କି ଜଳନ୍ତୁ
ନିମ୍ନଗା ବକ୍ଷ ଉଜ୍ଜ୍ୱଳ ?
ଶୋଭିଲେ ପୂର୍ଣ୍ଣେନ୍ଦୁ            ମାଳ ମଣିମୟ
ତରଙ୍ଗିଣୀ ବକ୍ଷୋପର
କ୍ଷୀରୋଦଶମ୍ଭୁନେ            ବିଷ୍ଣୁ ବକ୍ଷଶୋଭା
କଉସ୍ତୁଭ ଅନୁକର ।
ସତେ ଅକଳଙ୍କ            ସେ ନରଶଶାଙ୍କ
ଦର୍ଶନେ ବିଷଣ୍ଣ ମନେ,
ପାଞ୍ଚିଲେ କି ଶଶୀ            ସକଳଙ୍କ ତାଙ୍କ
କଳେବର ବିସର୍ଜନେ ।
ଜାହ୍ନବୀ-ଜୀବନେ            ବିସର୍ଜି ଜୀବନ
କଳଙ୍କ-କାଳିମା ଧୋଇ
ଉଠିବେ ପଞ୍ଚକ            ପୁଣ୍ୟସ୍ନାନ ସାରି
ପୂର୍ଣ୍ଣ ଜ୍ୟୋତିର୍ମୟ ହୋଇ ।

—ଗ—

କ୍ଷଣକେ ଭାଙ୍ଗିଲା ଧ୍ୟାନ, ଧୀରେ ରଘୁମଣି
ଉନ୍ମୀଳି ରାଜୀବ ନେତ୍ର ଦେଖିଲେ ସମ୍ମୁଖେ,
ରଜତ ଶୈଳସଙ୍କାଶ ଶମ୍ଭୁ ଶୂଳପାଣି
ବିଭୂତିଭୂଷଣ ଅଙ୍ଗେ ଶିତାସି୍ମତ-ମୁଖେ ।
ଆଚମ୍ବିତେ ବିକମ୍ପିତ ହେଲା ବେନି ହୃଦେ
ପ୍ରେମର ପୂର୍ଣ୍ଣିମାସିନ୍ଧୁ ପୂର୍ଣ୍ଣ ଉଦ୍‌ବେଳନେ .
ବହିଲା ମଳୟ ମନ୍ଦ ଶୀତ ସ୍ନିଗ୍ଧ ମୁଦେ
ଗାଇଲେ ସଙ୍ଗୀତ ଗଙ୍ଗା-ତରଙ୍ଗ ଦୋଳନେ,

ବିମଳ ତୁଷାର ଶୁଭ୍ର ଶଙ୍କର ଶରୀର
ସଙ୍ଗେ ମିଳିଲି ରମଙ୍କ ନୀଳମଣି ତନୁ,
ଜ୍ୟୋତ୍ସ୍ନା ରୂପସୀ ଧରି ମୂରତି ରୁଚିର
ଅବତରି ଅବା ପୂର୍ଣ୍ଣ ଶଶାଙ୍କ ସଦନୁ
ନୀଳ ନୀରଦର ଘନ ନୀଳିମାର ସଙ୍ଗେ
ଯୁଗଳ ମିଳନେ ମାତି, ନିଶା ଅନ୍ଧକାର
ମନାସି କି ଧରିଥିଲେ କାନନ ଉତ୍ସଙ୍ଗେ
ନରକାନ୍ତକାନ୍ତି ନରକାନ୍ତ ମନୋହର;
ଅଥବା କି ମନ୍ଥି ସିନ୍ଧୁ ନୀଳମଣି ବକ୍ଷ
ରୂପସୀ ଚନ୍ଦ୍ରକାରିଣୀ ଶୟନେ ଆରାମେ ?
ଉଜ୍ଜ୍ୱଳିତ୍ତି ଅବା ଦନ ମଞ୍ଜୁହାର କକ୍ଷ
ଶଙ୍କର ମୌକ୍ତିକ ମିଶି ନୀଳମଣି ରାମେ ?

ସରସ ବସନ୍ତ ସାଜ କୁସୁମ ଭୂଷଣେ
ଉହ୍ଲସିଲା ବନେ ଶିବ ରାମସେବା ଆଶେ;
ଅକାଳ କୁସୁମରାଜି ଫୁଟିଲେ କାନନେ,
ହସିଲା ରଙ୍ଗିଣୀ ଗଙ୍ଗଶିଉଳୀର ପାଶେ ।

ଟଗର, ଉଗରସମ ନବ ବରଷାର,
ଶୋଭିଲା ବନଲକ୍ଷ୍ମୀର ଶ୍ୟାମଳ ପଣନ୍ତେ;
ଫୁଟିଲା ବାସନ୍ତୀ ନବ ଆସବ ଆଧାର
ମାଳତୀ ସହ କିଂଶୁକ ଅକାଳ ବସନ୍ତେ ।

ହସିଲା ରଜନୀଗନ୍ଧା ଗନ୍ଧରାଜ ସହ
ନବଘନ ପ୍ରଣୟିନୀ ଚହଟେ କାମିନୀ;
କୁମୁଦ-କମଳଦଳେ ଭରିଗଲା ଦହ,
ବିକଶିଲା ମାଧବିକା ମଧୁରହାସିନୀ ।

ଭ୍ରମିଲା ଭ୍ରମର ଗୀତେ ଭରି ବନସ୍ଥଳୀ
ଡାକିଲା ଡାହୁକ, ନାଚେ, ଶିଖୀ ଚେଳ କ୍ରୀଡ଼ା,
ଶୁଭିଲାକ ମଦକଳ କୋକିଳ କାକଳୀ
ହଂସ କୋକ ସୁଖେ ସରେ କଲେ ଜଳକ୍ରୀଡ଼ା ।
ପ୍ରେମପାଶେ ହାରି କାଳ ଲଜ୍ଜେ ଅଧୋମୁଖେ
ଭେଟି ପଦେ ସରବସ୍ୱ ହୋଇ କୃତକୃତ୍ୟ,
ଅଘଟନ ସଂଘଟନ କରାଇଣ ସୁଖେ
ଖଟଣୀ ଖଟିଲା ଯଥା ବଚସ୍କର ଭୃତ୍ୟ ।

—୪—

ଝରିଲା କୁସୁମ ଝରଣା
ଝର ଝର ଅମ୍ବରୁ
କୁସୁମ ଅଞ୍ଜଳି ଅର୍ପିଲେ
ବନ କୁସୁମ-ତରୁ
ସୁନ୍ଦର ମନ୍ଦାର ମାଳିକା
ସୁର-ନନ୍ଦନ-ବନୁ
ବରଷିଲେ ବରବରଣା
ସୁରବାଳା ଗଗନୁଁ ।
ଉଚ୍ଛୁଳି ପଡ଼ିଲା ଚୌଦିଗ
ଶୁଭ-ଶଙ୍ଖ ନିନାଦେ
ସେ କାଳେ ମଗଧ-ମହିଳା
ଗଣ ପୁର-ପ୍ରାସାଦେ
ସାୟାହ୍ନେ ଆକାଶ-ପ୍ରଦୀପ
ଜାଳି ଧୂପୋପକଣ୍ଠେ
ବ୍ରତ ଉଦ୍‌ଯାପନ-ସଙ୍ଗୀତ
ଗାଉଥିଲେ ସୁକଣ୍ଠେ ।

(ପୂର୍ଣ୍ଣିମା ପ୍ରଭାତେ ଗାଧୋଇ
ଦେଲା ଜାହ୍ନବୀ ଜଳେ
ଅନୁଆ ଲୁଗାଲେ ବରତ
ଶଙ୍ଖ ଚଉଦ ତଳେ ।
ସାୟାହ୍ନେ ପଞ୍ଚକ ବ୍ରତବଧୂ
ସେବା ସବୁଦେ ସାରଣ
ଘରେ ଘରେ ବସି ଗାବନ୍ତ
ସପ୍ତ ପଞ୍ଚ ମିଳଣ । )
ସେ ମଙ୍ଗଳ ଶଙ୍ଖନାଦ
ବାୟୁ ଆଣିଲା ବହି,
ନୃତ୍ୟ ଗୀତ ଆରମ୍ଭିଲେ କି
ବନେ ପିକ ବରହୀ ।
ଗାୟକ କୋକିଳ, ମୟୂର
ନାଚେ ନର୍ତ୍ତକୀ ବେଶେ,
ତରଙ୍ଗ ମୃଦଙ୍ଗ ବଜାଏ
ରଙ୍ଗେ ଗଣ୍ଡକ ଶେଷେ ।
ଏଣ ତୌର୍ଯ୍ୟତ୍ରିକେ ଏମନ୍ତେ
ବନ ହେଲା ମୁଖର
ବନବାଳାଗଣ ବିଳାସ
ଭୁଲି ହେଲେ ଚଞ୍ଚଳ ।
ସେ ମୟୂର-ଲୀଳା-ଦର୍ଶନ
ଆଶେ ନୀଳ ଆକାଶେ;
ଧବଳ-ଜଳଦ ଅଳିନ୍ଦେ
ବସି ପରମୋଲ୍ଲାସେ,

ନିରୀକ୍ଷଣ କଲେ ସୃଷ୍ଟିରେ—
କ୍ଷଣା ସୁର-ତରୁଣୀ
ନିରୁପମ-ରୂପ-ରତନ
ବ୍ୟୋମ-ପ୍ରାଙ୍ଗଣେ ବୁଣି ।
ସେ ନର-ଅମର-ମିଳନ—
ଲୀଳା ଦର୍ଶନ କରି
ସୁର ବିଦ୍ୟାଧରୀ ସୁବର୍ଣ୍ଣ-
ବୀଣା ଶ୍ରୀକରେ ଧରି,
ଜ୍ୟୋତ୍ସ୍ନା ହିନ୍ଦୋଳେ ବିଳସି
ନୃତ୍ୟ କଲେକ ରଙ୍ଗେ,
ନାଚଣ ଉଠିଲା ଭାରତ—
ସିନ୍ଧୁ ଭୃଙ୍ଗ-ତରଙ୍ଗେ ।
ପ୍ରେମେ ବଜାଇଲେ ଦୁନ୍ଦୁଭି
ସୁର-ସୁନ୍ଦରୀଗଣ
ଗାଇଲେ ମଙ୍ଗଳ ସଙ୍ଗୀତ
ମଘବାଙ୍କ ଗୁରଣ ।
ଦେଖିଲେ ମଗଧମଣ୍ଡନା
ପୁର ଅଙ୍ଗନାକୁଳ
ମଗଧ-ମହେନ୍ଦ୍ର-ପ୍ରାସାଦ
କ୍ଷୀରେ ଧୋଇଣ ଢ଼ୁଲ,
ଦେଖିଲେକ ପୁର ଗାୟିକା
ଗାଉଁ ଗାଉଁ ସଙ୍ଗୀତ,
ଦେଖିଲେ ନାବକେ ଜାହ୍ନବୀ—
ବକ୍ଷେ ବାଦ୍ୟ ବୋଳିତ ।

ଦେଖିଲେ ପାଟଳୀପୁତ୍ରର
ରାଜମନ୍ଦିରୀ ଦଳ
ଜଗତମୋହନୀ ଜଗତ୍ତି
ରୂପେ କର ଉଜ୍ଜ୍ୱଳ ।
ଦେଖିଲେ ମୀନାଳ ଚକଟେ
ମୀନ ମୀନଙ୍କୁ ଗ୍ରାସି,
ଶିଶୁମାର ସଙ୍ଗେ ଦେଖିଲେ
କୂର୍ମ ତରଙ୍ଗେ ଭାସି ।
ଦେଖିଲେକ ହଂସ ସାରସ
ସରୋବରେ ସନ୍ତର
ଦେଖିଲା କୋକିଳ ନିକୁଞ୍ଜେ
ଚୋଳ ଗୀତ ଲହରୀ ।
ଶାଖାପରେ ବସି ଦେଖିଲା
ଶିଖୀ ପରମ ସୁଖେ
ତୁଷାରପୁଞ୍ଜେ କି ଜନ୍ତୁଟି
ନବଘନ କୌତୁକେ !
ନୀଳମଣି-ଶ୍ୟାମ ରାମଙ୍କ
ନୀଳ-ନୀରଜ-କାନ୍ତି
ଜନ୍ମାଇଲା ଶିଖୀ ନୟନେ
ନବ ନୀରଦ ଭ୍ରାନ୍ତି ।
ଅମଳ ଧବଳ ମଦେଶ—
ମଞ୍ଜୁ ଚନ୍ଦ୍ରର ଛଟା
ଜଣିଲା ନୀହାରସ୍ତୋଟର
ମନୋହାରିଣୀ ଘଟା ।

ସେ ଅପୂର୍ବ ପ୍ରେମଲୀଳାର
ଅପରୂପ ମାଧୁରୀ—
ପ୍ରବାହେ ଭାସିଲା ଜନକ—
ମସ୍ତୀ ଜନକପୁରୀ ।
ସ୍ଥାବର ଜଙ୍ଗମ ସେ ପ୍ରେମ—
ସୁଧା ପ୍ଲାବନେ ଭାସି
ସୁପବିତ୍ର ହେଲେ ହୃଦୟୁ
କଳି-କଲ୍ମଷ ନାଶି ।
କଲୁଷକାଳିମା ଅନ୍ତରୁ
ଧୋଇଯାନ୍ତେ ଅନ୍ତର
ବାଜିଲା ହୃଦୟ ବୀଣାରେ
ବିଶ୍ୱ ପ୍ରେମ-ମନ୍ତ୍ର ।

—*—

ସେ ଦିନୁ ହେଲା ଏ ମନୋହର ସ୍ଥଳୀ
ହରିହର ସମ୍ମିଳନେ
ମହାତୀର୍ଥରୂପେ ସର୍ବତ୍ର ବିଖ୍ୟାତ
ଖିଳ ଭାରତ ଭୁବନେ ।
ଏବେ ତ ନିଖିଳ କଲୁଷ-ନାଶିନୀ
ଜାହ୍ନବୀର ତୀରେ ସ୍ଥିତ,
ଗଣ୍ଡକସଙ୍ଗମ ଦୁଜେ ଏ ସ୍ଥଳୀର
ମହାତ୍ମ୍ୟ କରେ ବର୍ଦ୍ଧିତ ।
ତୃତୀୟେ ଏ ପୁଣି ପୁରାଣ ପ୍ରସିଦ୍ଧ
ମିଥିଳାର ଅବତଂସ,
ଚତୁର୍ଥେ ଲଭନ୍ତି ଶିବ ରାମଙ୍କର
ସମ୍ମିଳିତ ପଦସ୍ପର୍ଶ ।

ପଞ୍ଚମେ ପଞ୍ଚକ ପୂର୍ଣ୍ଣିମା-ପ୍ରଭାତେ
ମହାସ୍ନାନ ଯୋଗ ଜାଣି,
ଚତୁର୍ବର୍ଗଫଳ ଲଭନ୍ତି ମାନବେ
ଏ ପବିତ୍ର ଜଳେ ସ୍ନାନ ।
ଷଷ୍ଠ-ମହାତୀର୍ଥ-ସ୍ନାନ-ଦାନ-ଫଳ
ଲଭନ୍ତି ପୁଣ୍ୟାତ୍ମା ଜନେ
ପଞ୍ଚକ-ପୂର୍ଣ୍ଣିମା-ପୁଣ୍ୟାହରେ ହରି—
ହରନାଥ ସନ୍ଦର୍ଶନେ ।
ଦେବଗଣଙ୍କର ପ୍ରିୟ ଲୀଳାସ୍ଥଳୀ
ଏ ମହାଭାରତ କ୍ଷେତ୍ର,
ପ୍ରତି ରେଣୁ ଯାର ଦେବ ଦେବୀଙ୍କର
ପଦ-ପରଶେ ପବିତ୍ର ।
ହିମଗିରିଠାରୁ କୁମାରିକା ଯାଏ
ନଦ ନଦୀ ଗିରିବନ
ସରବେ ବହନ୍ତି ଦୟାମୟଙ୍କର
ସୁଦୟାର ନିଦର୍ଶନ ।
ନବ ନବ ଲୀଳାମାଧୁରୀ ବିଳାସେ
ଅବତରି କୃପାମୟ
ଧର୍ମରାଜ୍ୟ ସ୍ଥାପି ଖିଲଭୂଭାରତେ
ବିତରିଲେ ବରାଭୟ ।
ଅଗଣନ ତୀର୍ଥେ ହୋଇଲେହେଁ ମଣ୍ଡିତ
ପବିତ୍ର ଭାରତ ମହୀ
ଏ ମହାତୀର୍ଥର ପୁରାଣ ମାହାତ୍ମ୍ୟ
ବଚନେ ନୁହଇ କହି ।

ଯହିଁ ରଘୁମଣି ପୂର୍ଣ୍ଣବ୍ରହ୍ମ ରାମ
ଶିବ ଶୂଳପାଣି ସଙ୍ଗେ
ଭାସିଲେ ମିଳନମହୋତ୍ସବେ ମାତି
ଅନନ୍ତ ପ୍ରେମ-ତରଙ୍ଗେ,
ସେ ମଧୁରଲୀଳା ସ୍ମାରକ ପର୍ବରୂପେ
ଅଦ୍ୟାପି ଏ ପୁଣ୍ୟସ୍ଥାନେ
ମହାମେଳା ଏକ ବସେ ପ୍ରତିବର୍ଷ
ବର୍ଷାଋତୁ ଅବସାନେ ।
ନୀରଦମାଳିନୀ ବରଷା ଗମନେ
ଶରତ ଆସଇ ହସି,
ସେ କାଳେ ପୁଳିନ ହୁଏ ଧବଳିତ
କାଶ-କୁସୁମ ଝଲକି ।
କାର୍ତ୍ତିକର ଶୁକ୍ଳପକ୍ଷ-ଶେଷଭାଗେ
ପଞ୍ଚକ ପୂର୍ଣ୍ଣିମା ଯାଏ
ଦିନୁଁ ଦିନୁଁ ସପ୍ତ ଦିନ ଯାଏ ମେଳା
କ୍ରମେ କ୍ରମେ ବଢ଼ୁଥାଏ ।
ଭାରତର ନାନାସ୍ଥାନୁ ବହୁ ଦୂରୁ
ଆସୁଥାନ୍ତି ଯାତ୍ରୀଗଣ
ଶଶିକଳାପ୍ରାୟ ଦିନୁଁ ଦିନୁଁ କରି
ମେଳା ଅଙ୍ଗ ବରଧନ ।
ବସୁଥାଏ ନଦୀଗର୍ଭରେ ସାରି ସାରି
ଦୋକାନୀ ବିବିଧ ଛନ୍ଦେ
ସ୍ଥାନେ ସ୍ଥାନେ ଜନେ ଦିଗ୍ଲଭଣଥାନ୍ତି
ଗୃହିଣୀ ପରମାନନ୍ଦେ ।

କାହିଁ ଅବା ଅତ ଅଳ୍ପକାଳସ୍ଥାୟୀ
କୃତ୍ରିମ ବାସ ନିର୍ମାଣି
ପାନ୍ଥଶାଳା ଖୋଲି ଦିଅନ୍ତ କେହ୍ଵ ବା
ଯାତ୍ରୀ ପ୍ରୟୋଜନ ଜାଣି ।
ଆସୁଥାନ୍ତି ଯୂଥ ଯୂଥ ଗୋ ମହିଷ
ଗଜ ବାଜୀ ଅଗଣନ
ଦୃଶ୍ୟ ପ୍ରଦର୍ଶନୀ ସକାଶେ କାହିଁ ବା
ହୁଅଇ ମଞ୍ଚ ରଚନ ।
ଏହିରୂପେ ଦିନୁ ଦିନ ମେଳା ଅଙ୍ଗ
ହେଉଥାଏ ବର୍ଦ୍ଧମାନ,
ପୂର୍ଣ୍ଣିମାକୁ ଯାଇ ପୂର୍ଣ୍ଣତା ଲଭଇ
ପୂର୍ଣ୍ଣିମାଶଶୀ ସମାନ ।
ସେଦିନ ଜନତା କଳକୋଳାହଳ
ବଳଇ ସିନ୍ଧୁଗର୍ଜନ,
ଆସନ୍ତି ସେଦିନ ମେଳା ଦର୍ଶନକୁ
ପୁର-ପଲ୍ଲୀବାସୀ-ଗଣ ।
ମାତଙ୍ଗ ବୃଂହିତ ଗୋଧନର ହମ୍ବା,
ତୁରଙ୍ଗମ ହ୍ରେଷାରବ
ସଙ୍ଗରେ ମିଶଇ ସମବେତ ଜନ—
ମଣ୍ଡଳୀର କଳରବ ।
ଦେଶ ଦେଶାନ୍ତରୁ ଆସି ସନ୍ନ୍ୟାସୀଏ
ଜୟ ଜୟ ନାଦ କରି
ମନ୍ଦର ମଣ୍ଡପେ ବସି ଭୋଗୁଥାନ୍ତି
ଭଜନାନନ୍ଦ-ଲହରୀ ।

କାହିଁ ଗାଉଥାନ୍ତି ଗାୟକେ, ସୁକଣ୍ଠେ
ସଙ୍ଗୀତେ ପ୍ଲାବି ଗୁଞ୍ଜଣି,
ଶ୍ରୋତୃବର୍ଗ ଶୁଣନ୍ତି 'ବଳଦାସ' ଛନ୍ଦ
ତାଳେ ପଡ଼ୁଥାଏ ପୁଣି
ଆସନ୍ତି ଏକାଳେ ଅଗଣିତ ମହା—
ଯତି, ଗୃହତ୍ୟାଗୀ, ବୃଦ୍ଧ,
ଧୂନି ଜାଳି ସୁରଧୁନୀ ସିକତାରେ
ପୋତି ତାଳପତ୍ର ଛତ୍ର ।
ଉନ୍ମୁକ୍ତ ଆକାଶ ତଳେ ବସି କେତେ
ରହନ୍ତି ଦିବା ଶର୍ବରୀ
ଶିଶିରକ୍ତ ଶୀତ-ପରଶା-ନିଶାର
ଦାରୁଣ ହିମେ ନ ଡରି ।
ପୂର୍ଣ୍ଣିମା ଶର୍ବରୀ ଶେଷେ କ୍ରମେ କ୍ରମେ
ମଉଳି ପଡ଼ଇ ମେଳା,
ପୂର୍ଣ୍ଣିମା ନିଶାନ୍ତେ ଲହରୀ ଯେସନ
ଗୁଡ଼ିଯାଏ ସିନ୍ଧୁବେଳା ।
ଛାଡ଼ି ଯାଉଥାନ୍ତି ତଥା ଦିନେ ଦିନେ
ଦୂରଦେଶୀ ଆଗନ୍ତୁକେ,
ହୟ ହସ୍ତୀ ଗୋରୁ ଘେନି ବେପାରୀଏ
ବାହୁଡ଼ନ୍ତି ଗୃହମୁଖେ ।
ବାହୁଡ଼ନ୍ତି ସର୍ବେ ପଣ୍ୟଜୀବଗଣ
ବିପଣି-ବୀଥିକା ଘେନି
ଜନାକୀର୍ଣ୍ଣ ରାଜପଥେ ଯାନ୍ତି ଜନେ
ଯଥା ପିପୀଲିକାଶ୍ରେଣୀ

ଦ୍ୱିତୀୟ ତୃତୀୟ ବରଷର ମଧ୍ୟେ
ସରବେ ଦେଖଣାହାରି
ବାହୁଡ଼ନ୍ତି ନିଜ ନିଜ ଦେଶେ ଛନ୍ଦ
ମେଳା ଦରଶନ ସାରି ।
ଶୁଣେ ଗଙ୍ଗାପୁରୀ ନାମେ ମଙ୍ଗଳପୁରୀ
ବରଷରଛନ୍ଦ ମେଳା,
ପୂର୍ଣ୍ଣିମା ପୁଣ୍ୟାନନ୍ଦ ସନ୍ଦର୍ଶନ ଯାର
ଭବସାଗରକୁ ଭେଳା ।
କାର୍ତ୍ତିକ ପଞ୍ଚକ ପୂର୍ଣ୍ଣିମା ପୁଣ୍ୟାହେ
ଯେ ହୋଇ ବିଶୁଦ୍ଧ ମନ,
ସଙ୍ଗମ ସଲିଳେ ଅବଗାହ କରେ
ମହାମେଳା ପର୍ଯ୍ୟଟନ ।
ତାଦୃଶ୍ୟ ସୁକୃତବନ୍ତ ଜନ ଅଛି
ବିରଳ ଏ ଭବ ପୁରେ
ହୃଦୟ ତାହାର ସମୁଜ୍ଜ୍ୱଳ ସଦା
ଦିବ୍ୟ ପ୍ରେମ-ପ୍ରଭାବରେ ।

---

# ଜନା

( ଶ୍ରୀ ନାରାୟଣମୋହନ ଦେ, ଏମ୍. ଏ. )

ମାହେଷ୍ମତୀପୁରର ରାଜକୁମାର 'ପ୍ରବୀର' ଅର୍ଜ୍ଜୁନଙ୍କ ଯଜ୍ଞୀୟ ଅଶ୍ୱଧରି ଆଣିଥିବାରୁ ତାଙ୍କର ପିତା ନୀଳଧ୍ୱଜ ତାଙ୍କୁ ଯଜ୍ଞୀୟ ଅଶ୍ୱ ପ୍ରତ୍ୟର୍ପଣ କରିବାକୁ ଉପଦେଶ ଦେଇଥିଲେ କିନ୍ତୁ ତାଙ୍କର ମାତା ଗଙ୍ଗାଙ୍କ ତନୟା "ଜନା" ସେଥିରେ ସମ୍ମତ ହୋଇ ନ ଥିଲେ; ସୁତରାଂ ପ୍ରବୀରଙ୍କୁ ଅର୍ଜ୍ଜୁନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ହୋଇଥିଲା । ଯୁଦ୍ଧରେ ପ୍ରବୀର ଅଜେୟ ହୋଇ ଉଠିବାରୁ ଅର୍ଜ୍ଜୁନ କପଟ ଯୁଦ୍ଧରେ ତାଙ୍କୁ ପରାସ୍ତ ଓ ନିହତ କରିଥିଲେ—ଏ କଥା ମହାଭାରତରେ ଅଛି ।

( ଅମିତ୍ରାକ୍ଷର ଛନ୍ଦ )

କହ ବତ୍ସ, କେଉଁ ମୁଖେ ଫାଲ୍‌ଗୁନ ଚରଣେ
ନୁଆଁଇ ମସ୍ତକ ତୋର ଦେବୁ ଜଳାଞ୍ଜଳି
ସନାତନ ଆର୍ଯ୍ୟଧର୍ମେ, କ୍ଷତ୍ରିୟର ବ୍ରତେ ?
ପ୍ରତ୍ୟର୍ପଣ କରି କି ରେ ଏ ଯଜ୍ଞଘୋଟକ,
(ଧରିଅଛୁ ଯାହା ବତ୍ସ ପରମ ସାହସେ
ବୀରେନ୍ଦ୍ର ଉଚିତ ଆର୍ଯ୍ୟକୁଳ ପ୍ରଥାମତେ )
ଅଯଶଃ-ଜଳଧିଜଳେ ବୁଡ଼ାଇବୁ ସତେ
ମହୀଅବତଂସ ଏହି ରାଜବଂଶ ଟେକ ?
ସୁଯଶ-କେତନ ଯାର ଉଡ଼େ ଅନମ୍ବରେ
ବୀର-ବୀରାଙ୍ଗନା-ବୀର୍ଯ୍ୟ-ମୟୂଖ-ଭାସ୍ୱର ?
ଧାର୍ମ୍ମିକତାମୟୀ ସେହି କୀର୍ତ୍ତି ବିଜ୍ଞାପନା
ବୀରବୃନ୍ଦେ ରଣକେନ୍ଦ୍ରେ କରେ ଉନ୍ମେଷିତ ।
ପ୍ରତ୍ୟର୍ପଣ କରି ହାୟ, ହୋଇ ରଣେ ଭୀତ,
ପରମ୍ପରାଗତ ବଂଶମର୍ଯ୍ୟାଦା-ପାଦପ

କେଉଁ ପ୍ରାଣେ ଛେଦବୁରେ ମୁଣ୍ଡାକ୍ଷ୍ଣ କୁଠାରେ !
ଭୁଲି କି ଗଲୁ ପିତାଙ୍କ ସ୍ନେହାନ୍ଧବଚନେ
କାହା ଗର୍ଭେ ଜନ୍ମ,ଲଭିଅଛୁ, ବୀରମଣି !
ସୁରଧୂନୀ ବରେ, ପୁଣି ମମ ଆଶୀର୍ବାଦେ
କି ଭୟ ତୋହର ବତ୍ସ ଅର୍ଜୁନ ସମରେ ?
ଦେବ ହୁତାଶନ ତବ ହୋଇବେ ସହାୟ
ରଣାଙ୍ଗନେ, ସହୋଦରା ସ୍ୱାହା ଅନୁରୋଧେ ।
ଯାଅ କର ରଣସଜ୍ଜା ପରମ କୌଶଳେ,—
ପ୍ରଦର୍ଶାଅ ଧନଞ୍ଜୟେ ବୀର୍ଯ୍ୟ-ପରାକାଷ୍ଠା
ଦେଖନ୍ତୁ ଚକିତେ ଗୁଣଗ୍ରାହୀ ମାତାମହ
ପ୍ରତିଦ୍ୱନ୍ଦ୍ୱୀ ଯେହ୍ନେ ଅର୍ଜୁନ ସ୍ୟନ୍ଦନେ ।
ବୀର ବିନା କିଏ ପାରେ ବୀରତ୍ୱର ମୂଲ୍ୟ ।
ଏମନ ଉତ୍କୃଷ୍ଟ ଜନା-ବାଣୀପରମ୍ପରା
ପ୍ରବିଷ୍ଟ ହୁଅନ୍ତେ ରାଣୀ-ଶ୍ରବଣକୁହରେ
ବଡଶଙ୍କୁ ସମ, ମାଳଧ୍ୱଜ ନରପତି
ଉତ୍ତରିଲେ ଅର୍ଦ୍ଧରୁଦ୍ଧ କଣ୍ଠେ, ସତ୍ତ୍ୱଗୁଣେ
ମହାବନ୍ଦନୀୟ — ରାଜ୍ୟେ ଅତୁଳ ବିଭବେ
ହୋଇ ବୀତସ୍ପୃହ, ମହୋଲ୍ଲାସେ ରତ ସଦା
ଶ୍ରୀକୃଷ୍ଣ ପଦାରବିନ୍ଦ ମକରନ୍ଦ ପାନେ—
ଶାଶ୍ୱତେ ଅର୍ପିଣ ଭବଭୋଗ-ଅଭିଳାଷ;
କହନ୍ତି ବିନୟ ନମ୍ର ମଧୁର ବଚନ
"ପାଷାଣେ କି ବାନ୍ଧିଅଛ ଜନନୀ ହୃଦୟ
ସ୍ୱଭାବେ କୋମଳ ଯାହା ବାତ୍ସଲ୍ୟ ପୀୟୂଷେ !
ଅଶନ ଶୟନ ତ୍ୟଜ, ପୂଜ ସୁରଧୂନୀ

ଲଭିଅଛୁ ପରା, ସତେ ! ତନୟ-ରତନ,
ବହୁକଷ୍ଟେ, ବାର୍ଦ୍ଧକ୍ୟେ ମୋ ନୟନ-ପିତୁଳା !
କ୍ଷଣ ଆଦର୍ଶନେ ଯାର ପଳ ମଣେ ଯୁଗ ?
କେଉଁ ପ୍ରାଣେ, କି ମାୟାରେ ଭୁଲି
ପ୍ରେରିବ ଗୋ ପୁତ୍ରମଣି, ଜନନୀ ହୋଇଣ
ରାଧେୟ-ବୀର୍ଯ୍ୟ-ନିକଷ-କୌନ୍ତେୟ ସମରେ ?
ପୁରନ୍ଦରେ ପରାଭବି ଖାଣ୍ଡବ-ଦାହନେ
ବିଜୟ ଅଭିଖ୍ୟା ଯାର ବିବୁଧ ମଣ୍ଡଳେ ।
ଯା ସହ ସମରେ ହାରି ସ୍ୱୟଂ ଶୂଳପାଣି
ତୋଷ ଲଭି ପ୍ରଦାନିଲେ ଅସ୍ତ୍ର ପାଶୁପତ ।
ଭୀଷ୍ମ-ଦ୍ରୋଣ ନିସେବିତା ବିଶ୍ୱବନ୍ଦନୀୟା
କୁରୁକ୍ଷେତ୍ର ଅଧିଷ୍ଠାତ୍ରୀ ରଣଚଣ୍ଡୀ ପାଶେ,
ଅର୍ପି ରୁଧିର ପାରଣା, ଲଭିଅଛୁ ଯେହୁ·
ବିଜୟ ମାଳିକା, ଏହି, ସତ, ସେ ଅର୍ଜୁନ
କୌରବ ଗରିମାଚଳ, ଅଚଳପ୍ରତିମ
ସଂସପ୍ତକରଣେ ସଦା, ଅରିନ୍ଦମ ପାର୍ଥ,
ଦୈତ୍ୟଯୁଦ୍ଧେ ଅରିନ୍ଦମ ଯଥା ଷାଣ୍ମାତୁର ।
କାହା ସହ କର ରାଣି କାହାର ତୁଳନା ?
ଶୋଭାଞ୍ଜନ ତୁଳା କି ଗୋ ଶାଳତରୁ ସଙ୍ଗେ ?
ଅବ୍ୟର୍ଥ ସନ୍ଧାନୀ ପାର୍ଥ ସୁତୀକ୍ଷ୍ଣ ଶାୟକେ
ରୁଧିରରଞ୍ଜିତ ଏହି ତନୁ ସୁକୁମାର
ଦେଖିବାରେ ପାରି ସତେ ! ବଳିଅଛି ମନ ?
( ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ—ସତ୍ୟ ଶାସ୍ତ୍ର ଉକ୍ତି )
ଭୂଭାର-ହରଣବ୍ୟାଜେ ନର-ନାରାୟଣ

ଜନ୍ମ ବିଷ୍ଣୁ ଅଂଶେ; ଶୁଣ ମୁଗ୍‌ଧେ, ଶୁଣ ତବ
ବିଜଗୀଷା-ପ୍ରଣୋଦିତ ଆଶାପ୍ଲୀ ବଚନ;
ଉନ୍ମାଦିନୀ ତୁଣ୍ଡେ ସିନା ସୁଶୋଭନ ତାହା;—
ହିତାହିତ ବିବେଚନା ହୀନ, ଦେଖ ଗଣି,
ଯୋଗୀନ୍ଦ୍ର-ମୁନୀନ୍ଦ୍ର ଧ୍ୟେୟ ଭକ୍ତଚିନ୍ତାମଣି
ଶରଣବତ୍ସଳ ସିନ୍ଧୁସୁତା-ପ୍ରାଣଧନ,
ଅର୍ଜ୍ଜୁନ-ସାରଥିରୂପେ ଆଜ ମୋ ଦୁଆରେ
ଉପଗତ ପୂର୍ବଜନ୍ମ ସୁକୃତର ଫଳେ ।
ଆସ ପ୍ରିୟେ, ଆସ ବେଗେ ଅର୍ପି ଧନଞ୍ଜୟେ
ଯଜ୍ଞ-ତୁରଙ୍ଗମ ସୁଖେ ପଶିବା ଶରଣ
ଅଶରଣ-ନିସ୍ତାରଣ-ଚରଣାରବିନ୍ଦେ ।'
"ଏ ହୀନ ମନ୍ତ୍ରଣା, ଭୀରୁ-କାପୁରୁଷୋଚିତ—
ଶୋଭେ କି ନରେନ୍ଦ୍ର ତବ ମୁଖେ ? ଉନ୍ମାଦିନୀ
ନୁହେଁ ଜନା—ବୀରାଙ୍ଗନା, ବୀରପ୍ରସବିନୀ ।
ନୁହଇ ବିଜନ, ମୁହିଁ ଖେଳେ ତାଳଭ୍ରାନ୍ତ—
ବିଳାସିନୀ, ନୁହେଁ ମୁହିଁ ତୁମ୍ଭ ସମ, ପ୍ରଭୋ,
ଗଡ୍‌ଡଳିକା ସ୍ରୋତ-ନ୍ୟାୟ-ପକ୍ଷପାତୀ ସଦା ।
ତୁମ୍ଭ ପରି କୁନ୍ତୀପୁତ୍ର ବୀର୍ଯ୍ୟ-ବିମୋହିତ
ନୁହେ ମୁହିଁ ! କୃଷ୍ଣ ରଣ-ନୀତି-ବିଶାରଦ
ପାର୍ଥଙ୍କୁ ତୁମ୍ଭର ଚକ୍ଷୁଅଛି ଭଲେ; ଯେବେ
ଧୂର୍ତ୍ତ ଅନ୍ୟାୟ ସମରେ ପୌରବ-ପଙ୍କଜ—
ରବି-ଶାନ୍ତନୁ-ନନ୍ଦନେ ବିମୁଖିଲା-ରଣେ
ଶିଖଣ୍ଡୀ ସହାୟେ;—ମିଥ୍ୟା ଘୋଷଣା ରଟାଇ
ଧୃଷ୍ଟଦ୍ୟୁମ୍ନ ହସ୍ତେ ବଧି ଗୁରୁ ଦ୍ରୋଣାଚାର୍ଯ୍ୟେ;
ଗୁରୁହତ୍ୟା-ପାପେ ଆତ୍ମା କଳୁଷିତ ତାର ।

ପିତୃହା ବ୍ରହ୍ମହା ପଦେ ପ୍ରଖ୍ୟାରତନୟ
ହେବ ସତେ ନତଶିର ? ଧିକ ତେବେ ଜନ୍ମ
ନାମେ, ଧିକ ରାଜବଂଶେ ଜନମ ମୋହର ।
ତୁମ୍ଭେ ନକ ପ୍ରତ୍ୟେ ଏହ୍ମ ଭାରତ କୌସ୍ତୁଭ—
ମାହେଷ୍ମତୀ-ବଂଶାମୃତ-ବଂଶ-ଅବତଂସ ?
ଶତ୍ରୁପଦଲେହୀ ହୋଇ ରହିବ କ ଚିର
ଭବତଳେ—ଉଡ଼ାଇ ଏ ଅଯଶଃ-କେତନ ?
ଭୂଭାରତେ ? କ ବୋଲିବେ କ୍ଷତ୍ରିୟ ସମାଜେ;
ପ୍ରକୃତିପୁଞ୍ଜ ବା କସ ବୋଲିବେ ନରେଶ
ଏହା ଶୁଣି ? ଜାଣ ତୁମ୍ଭେ ଧାର୍ମିକପ୍ରବର,
"ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ"
କାଷ୍ଠେ କାଷ୍ଠ ସଂଘର୍ଷଣୁ ଅନଳ ସ୍ଫୁଲିଙ୍ଗ-
ସମ, ପ୍ରଭୋ, ଏ ଜୀବନ ମୁହୂର୍ତ୍ତଭଙ୍ଗୁର,
ମୋ ପରି ନାସ୍ତି ନବୋଧ କବା ବୁଝାଇବ
ଭବାଦୃଶ ମହା ପ୍ରାଜ୍ଞଜନେ ? ଅନୁମତି
ଦିଅ ପ୍ରବର ସନ୍ତାନେ, ଯୁଝିବାକୁ ପାର୍ଥ—
ସହ—କ୍ଷତ୍ରିସହ ନ୍ୟାୟଯୁକ୍ତ, କୁଳଧର୍ମ
କ୍ଷତ୍ରିୟର, ଭକସାର ଅନ୍ୟ ଧର୍ମେ କବା
ପ୍ରୟୋଜନ କ୍ଷତ୍ରିୟର ? ସାର ଧର୍ମହିନା
କର୍ତ୍ତବ୍ୟ ଅନୁବର୍ତ୍ତନ ସମ୍ପଦେ ବିପଦେ ।
ବଣେଷରେ ଅର୍ଜ୍ଜୁନର ସମରଦକ୍ଷତା
ଜଣାଅଛି ମୋତେ ନରସାଇଁ ? ରଣେ ପୁଣି
ନ୍ୟାୟପତି ଛନ୍ତି ମାତାମହ,-ଧର୍ମାଧର୍ମ
ତୁଳାଦଣ୍ଡକରେ, ଗୁଣଗ୍ରାହୀ ଜନାର୍ଦ୍ଦନ ।
ଅଶୁଭ ଆଶଙ୍କା କପାଁ କର ନରନାହା ?

ନାହିଁ ଲୀଳାର ଧ୍ୱଂସ-ଶବ୍ଦରେ ଭୟ ନାହିଁ, ପ୍ରଭୋ !"
ଅଦ୍ୟାପି ଏ ଓଜସ୍ୱିନୀ ଜନନୀ ବୀରବାଣୀ ।
ଶୁଣିଇ ଧ୍ୱନିତ ନୀଳ ମହୋଦଧି ଜଳେ,
ଗାଇନ୍ତି ଲତା ବିତାନେ ଆରବଲୀ ଗିର—
ଅଧିତ୍ୟକା ଚନ୍ଦ୍ରାନନୀ ବନବାଳାଗଣ
କୁତୂହଳେ,-ଅଲକ୍ଷିତେ ପ୍ରବେଶିଲା ଯାହା
ଗଡ଼ ଦୁର୍ଗ ରାଜଲକ୍ଷ୍ମୀ ଦୁର୍ଗାବତୀଙ୍କର
ବିଶାଳ ହୃଦୟେ, ଯେବେ ଦେଖି ରଣସାଜେ
ପଠାଇଲେ ଶିଶୁ ପୁତ୍ର ବୀର ନାରାୟଣେ
ଯବନ ସେନାନୀ ସହ ତୁମୂଳ ସଂଗ୍ରାମେ,
କେଶରୀ-ବିକ୍ରମେ ଯହିଁ ଯୁଝି ବୀରମଣି
ହରାଇଲେ ପ୍ରାଣ, ଆହା, ଯବନକୃପାଣେ
ଉଡ଼ାଇ ଅମର କୀର୍ତ୍ତି ବିଶଦ କେତନ ।
ଆଉ ତ ନ ଶୁଣେ କେହି ପୂର୍ବପର ଆହା !
ସେ ବାଣୀର ପ୍ରତିଧ୍ୱନି ନିଖିଳ ଭାରତେ ।
କାହିଁ ସେ ଭାରତ ଆଜ, କାହିଁ ବା ସେ ପ୍ରାଣ
କାହିଁ ସେ ହୃଦୟ ମହା ଆର୍ଯ୍ୟରସେ ପୁଷ୍ଟ ?
ଆଉ ତ ନ ଖେଳେ ଖର ପ୍ରସ୍ରବଣୀତ
ଆର୍ଯ୍ୟ ହୃତ୍‌ପିଣ୍ଡର ଉଷ୍ଣ ଶୋଣିତ ଆଧାରେ
ପୂର୍ବପର, ହନେ ହେଲେ ଉଠେ ନାହିଁ ଆଜି
ବୀରାଙ୍ଗନା-ହୃଦସିନ୍ଧୁ କରି ଆଲୋଡ଼ିତ
ଉଲ୍ଲୋଳ-କଲ୍ଲୋଳମୟୀ ସେ ବାଣୀମୂର୍ଚ୍ଛନା;—
ନ ଉଠେ ଝଙ୍କାର ଆଉ ପୂର୍ବପର ଅହୋ !
ଶୌର୍ଯ୍ୟବୀର୍ଯ୍ୟ ଲୀଳାଭୂମି ଏହୁ ଆର୍ଯ୍ୟାବର୍ତ୍ତେ ।

---

# ବୁଦ୍ଧ ବନ୍ଦନା

( ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ, ଏମ୍. ଏ. ବି. ଏଡ୍. )

ପାପ-ତାପ-କଳୁଷ ପ୍ରାଣେ କରିବାକୁ ତବ ଦୀକ୍ଷା,
ଶାନ୍ତ କ୍ଷୁବ୍ଧ ଭିକ୍ଷୁ ଆସିଛି ଦିଅ ହେ ମୁକ୍ତି ଭିକ୍ଷା ।
ମୁକ୍ତ କର ହେ ମୁକ୍ତ ମୋ-ମନ-ମନ୍ଦିର ଅବରୁଦ୍ଧ,
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ! ୧ ।

ସ୍ପର୍ଶେ ସେ ତବ ଚିର ଅମୃତ ନିର୍ଝର ପ୍ରାଣେ ବର୍ଷେ,
ତିମିରବୃତ ଚିତ୍ତ-ମନ୍ଦିରେ ଜାଳ ହେ ଆଲୋକ ହର୍ଷେ
ଜୀବନ-ଅରବିନ୍ଦ ହେ ମମ ମୁଦ୍ରିତ ପାପକ୍ଷୁବ୍ଧ,
ବୁଦ୍ଧ ହେ ବୁଦ୍ଧ ହେ କର ହେ ମୁକ୍ତ ଶୁଦ୍ଧ ! ୨ ।

ଅନ୍ତରେ ମୋର ଅଶ୍ରୁ ବହୁଛି ସକଳ ଜୀବନବ୍ୟାପୀ
ତୁମରି ପଦ୍ମର ବନ୍ଦନ ଲାଗି ବୁଦ୍ଧ ହେ ଚିରପାପୀ,
ତବ ସୁନ୍ଦର ଚରଣକମଳେ ମୋ ଚିତ୍ତ-ଭୃଙ୍ଗ ଲୁବ୍ଧ,
ବିଶ୍ୱାସ ଦିଅ, ଦିଅ ହେ ଭରସା ଚିର ଅମୃତ ଶୁଦ୍ଧ ! ୩ ।

ଜୀବନର ଶତ ସଂଗ୍ରାମେ ପ୍ରଭୁ ଦେଇଛି ଛତ୍ରଭଙ୍ଗ
ଦେଖିଛି ଶ୍ରାନ୍ତ ନରକର ଲୀଳା ବାସନା-ମୋହ-ରଙ୍ଗ ।
ଧର୍ମ ଶରଣ ସଂଘ ଶରଣ ଶରଣ ହେ ମୋର ବୁଦ୍ଧ !
ଆଶ୍ରୟୀ ହୃଦେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! ୪ ।

ନିର୍ଯ୍ୟାତିତ ମୋ ନୟନ-ସଲିଳେ ଆଦେଶ ଧୋଇବି ପାଦ,
ଭୁଲିବି ଚରଣ-ଆଶ୍ରୟ ଲଭି ଅଜ୍ଞାନ ପରମାଦ,
ଭୁଲିବି ଦୈନ୍ୟ, ଆଧି ବ୍ୟାଧି ଅନ୍ତର ସମୃଦ୍ଧି
ଚରଣପଦ୍ମେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! ୫ ।

କରୁଣା-ସ୍ୱର୍ଗ-ଗଙ୍ଗାପ୍ଲାବନେ ମୁକ୍ତ କଲି ହେ ପାପ,
ଖଣ୍ଡିଲ ମୋହ କଳୁଷ ଦୁଃଖ ବିଶ୍ୱର ଅଭିଶାପ ।
ଆଶ୍ରୟ ଦେଲ ଅମୃତ ଦେଲ ହେ ଶିବ-ସତ୍ୟ-ମୁଗ୍‌ଧ ।
ଆସିଛୁ ଚରଣ ଲୁବ୍‌ଧ ଭିକ୍ଷୁ ଆଶ୍ରୟ ଦିଅ ଶୁଦ୍ଧ ! ୬ ।

ଲୁପ୍ତ ହେଉ ହେ ସନ୍ଦେହ ଅମା ଉଜ୍ଜ୍ୱଳ କରସ୍ପର୍ଶେ,
ସୁନ୍ଦର ପୂତ ଶୁଦ୍ଧ କର ହେ ଧରମ ପୁଣ୍ୟାଦର୍ଶେ ।
ଦିଅ ହେ ଭିକ୍ଷୁ ଗୈରିକ-ବାସ ଦଣ୍ଡ ପୁଣ୍ୟାୟୁଧ;
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ! ୭ ।

---

# ମୁକ୍ତି

( ଶ୍ରୀ ହରିବନ୍ଧୁ ଶତପଥୀ )

—୧—

ମୁକ୍ତିଦ୍ୱାରେ ଉଦାସୀ ଏ ମରପାନ୍ଥୀ-ଦଳ
ମାଗୁଛନ୍ତି ମୁକ୍ତିଭିକ୍ଷା ବନ୍ଧାଞ୍ଜଳି କରେ
କାହିଁ ମୁକ୍ତି ? ମୁମୁକ୍ଷୁର ଜୀବନ ସମ୍ବଳ,
ଯା ପୂତ ପରଶେ ଶାନ୍ତିଉତ୍ସ ନିତ୍ୟ ଝରେ ।

—୨—

ମୁକ୍ତିର ଦେବତା କାହିଁ ? କାହିଁ କେତେ ଦୂରେ ?
ସତେ କି ମୁକ୍ତିର ପଥ ଅନାଦି ଅନନ୍ତ ?
କେ କହିବ, କେତେ ଜନ୍ମ ମୁକ୍ତି ପ୍ରେମପୂରେ
ଅବଗାହି ଧନ୍ୟ ହୁଏ ନର ଭାଗ୍ୟବନ୍ତ ?

—୩—

ମୁକତିର ସୁଧାପାନେ କେ ନୁହେଁ ବିକଳ ?
ଭବକ୍ଷୁଧା ମେଣ୍ଟେ ପିନା ଏକା ତାର ଲାଗି;
ଲୁଚିଯାଏ ସଂସାରର ଯାତନା ସକଳ;
ଜୀବାତ୍ମା ହୁଅଇ ସୁଖ-ସଉଭାଗ୍ୟ ଭାଗୀ ।

—୪—

ସତେ କି ନ ମିଳେ ମୁକ୍ତି ଏ ଭବସାଗରେ ?
ମିଥ୍ୟା କିବା ଶାସ୍ତ୍ର ଉକ୍ତି, ଜନ୍ମାନ୍ତର ଦୁଃଖ ?
ଜୀବନର ମହାଭାର ନ ହେବ କି ଥରେ
ଅବସାନ, ଚିରନ୍ତରେ ଜଳିବ ମୟୂଖ ?

—୫—

ରାଜପଦ, ଧନ, ଜନ, ମୁକତି-କଣ୍ଟକ
ମୃଗତୃଷ୍ଣା ଭ୍ରମେ ପଡ଼ି ଏଥି ଜୀବଗଣ
କରୁ ଛଳବଳ, ଧନ ଆଶାର କୁହକ;
କାହିଁ ତାର ପରିତୃପ୍ତି ? ଅଶାନ୍ତି କାରଣ ।

—୬—

ତ୍ରିତାପ ଅନଳ ଘୋଟିଅଛି ଚଉକତି,
ମାୟାଜାଲ ବିସ୍ତାରିଛି ନଭ, ଜଳ, ସ୍ଥଳ,
ନିବିଡ଼ କୁହେଳ ଭେଦିଅଛି; କା ଶକତି
ଦେଖିବ ସେ ମୁକ୍ତିରୂପ ଚିରମନୋହର ।

—୭—

ଦିନୁ ଦିନ ଜଡ଼ ପ୍ରାଣ ଆଶା ଅବସାଦେ
ତୃଷ୍ଣାର ପୀଡ଼ନେ ନିତି ହୁଅଇ ଅସ୍ଥିର;
ସତେ କି ମୁକ୍ତି-ଦେବତା-ପ୍ରେମ-ପରସାଦେ
ଉଦ୍‌ବେଳିତ ହୃଦସିନ୍ଧୁ ଲଭିବ ସୁସ୍ଥିର ।

—୮—

ବୁଦ୍ଧ-ଅବତାରେ ଶାକ୍ୟ କୌପୀନବିଭୂତି-
ସାର ତ୍ୟାଗବ୍ରତ ମଣି ପଶିଲେ କାନନେ
ସାଧନା-ଯଜ୍ଞରେ ଦେଲେ କାମନା-ଆହୁତି
ମୁକ୍ତିମାର୍ଗ ଦେଖାଇଲେ ଭ୍ରାନ୍ତ ବିଶ୍ୱଜନେ ।

—୯—

ସେଦିନ ତ ଯାଙ୍କସେମା ଦୁଃଶାର କବନ୍ଧୁ
ଲଭିଥିଲେ ମୁକ୍ତି ଭକ୍ତି-ବିଶ୍ୱାସର ବଳେ;
ଜଗଜ୍ଜିତା ହୁଏ ନର ଧର୍ମକର୍ମ ବନ୍ଧୁ
ମୁକ୍ତିଫଳ-ରସାସ୍ୱାଦ ଲଭଇ ଭୂତଳେ ।

—୧୦—

ଜୀବନେ ମୁକ୍ତି ଆଦର୍ଶ ଜାଳେ ଦୀପ ଠାରି
ହିଂସା ଦ୍ୱେଷ ତେଜି କର ସେବା ଅନାଥର,
ସର୍ବଜନ ପ୍ରେମେ ଅଙ୍ଗ ଦିଅ ଥରେ ଢାଳି
ମିଳିବ ମୁକ୍ତଦ୍ୱାର, ମିଳିବ ସୁଫଳ ।

—୧୧—

ଥାଆନ୍ତା କି ପକ୍ଷ ମୋର ବିହଙ୍ଗମ ସମ
ଯାଆନ୍ତି ମୁଁ ଉଡ଼ି ପୂତ ନୈମିଷ କାନନେ,
ମୁକ୍ତପକ୍ଷୀ ମନ୍ତ୍ରମାନେ ଆତ୍ମା ଗୋଟି ମମ
ମିଶିଯାନ୍ତା ହେଲେ ସେହି ଶାଶ୍ୱତ ଚରଣେ ।

—୧୨—

ମୁକ୍ତିର ସଂଗ୍ରାମେ ଲେଲେ ଯୁଝିବ ମୁଁ ଆଉ ?
ନ କାହିଁଇ ଅସ୍ପଶ୍ୟ ହେ ମୁକ୍ତି ଦେବତା !
ଚକ୍ଷେ ଛେଦିଦିଅ ଯେତେ ଦୁନିଆର ଦାଉ;
ନିଅ ଟାଣି କୋଳେ ତବ ଜୀବନ-କବିତା ।

# ଶକୁନ୍ତଳାଙ୍କ ପତିଗୃହଯାତ୍ରା

( ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ, ବି. ଏ., ବି. ଏଲ୍. )

ପତିଗୃହେ ଶକୁନ୍ତଳା କରିବେ ଗମନ
ଭଲ କଣ୍ୱାଶ୍ରମ ଆଜ ବିଷାଦ-ମଗନ ।
ମୃଗପୋତ ଛଳେ ଚକ୍ଷୁ ଲୋତକ ପକାଇ
କାନ୍ଦନ୍ତି ସରଳା ସଖୀ ଗୁଣଗଣ ଧ୍ୟାୟି
ଶୋକର ତାମସୀ ଛାୟା କାୟାକୁ ବିସ୍ତାରି
ଆଶ୍ରମର ତରୁଦଳ ଅଛଇ ଆବୋରି ।
ବୃଦ୍ଧା ଗଉତମୀ, ପ୍ରିୟମ୍ବଦା, ଅନସୂୟା
କରନ୍ତି ବିଳାପ ହୋଇ ଆକୁଳହୃଦୟା ।
ନିର୍ବିକାର କଣ୍ୱମୁନି ବିକାରକୁ ଭଜି
ମାରବେ କରନ୍ତି ଶୋକ ଲୋତକ ବରଜି ।
ଗୃହୀଜନସୁଲଭ ଏ ଶୋକାବେଗ ପୁଣି
ଲକ୍ଷି ହେଉଛନ୍ତି ମୁନି ଚିନ୍ତାମଗ୍ନ ଗୁଣି
"ଶକୁନ୍ତଳା ପତିଗୃହେ କରିବ ଗମନ
ଜର୍ଜରୀଭୂତ ହେବ ମୋର କଣ୍ଠ ବାକ୍ୟହୀନ,
ବନବାସୀ ତାପସୀ ମୁଁ, ମାୟା ମୋ ଏସନ
କନ୍ୟା ତେଜି ନୋହୁଥିବେ କିସ ଗୃହୀଜନ ?
ଭାବି ଏହି ମନେ ମୁନି, ନବୀନ ଦୁକୂଳେ
ମଣ୍ଡି ବପୁ 'ଶକୁନ୍ତଳା' ଚରଣର ତଳେ
ପ୍ରଣମି ମାଗିଲେ ଧମା ବିଦାୟ କରୁଣ
ଶୋକ-ନଦୀ-ବନ୍ଧ ଭାଙ୍ଗି ଗଲା ତତକ୍ଷଣ ।

ନେତ୍ରଜଳରେ କରି ସିକ୍ତ ଭାଷା ମୁନିବର
ବହିଲେ ଆଶିଷ, "ବତ୍ସେ, ଲଭ ଗୋ ସତ୍ୱର
ସୁତ ରାଜଚକ୍ରବର୍ତ୍ତୀ-ଲକ୍ଷଣ-ସଂଯୁତ
ସଧବା ସିନ୍ଦୂର ଶିରେ ରାଜୁ ମା ! ଅକ୍ଷତ ।"
ତରୁଗଣେ ସମ୍ବୋଧନ କହନ୍ତି ତାପସ
"ତୁମ୍ଭଙ୍କୁ ନ ଦେଇ ଜଳ ଯେ ଜଳ ସ୍ପରଶ
କରି ନାହିଁ, ହୋଇ ଯେହୁ ଭୂଷଣ-ରଙ୍କିଣୀ
ପଲ୍ଲବ ତୁମ୍ଭର ଦିନେ କରି ନାହିଁ ହାନି;
କୁସୁମ ଫୁଟନ୍ତେ ତୁମ୍ଭ ଅନ୍ତର ଯାହାର
ଆନନ୍ଦରେ ପାଉଥିଲା ଭରି ଗୋ ତାହାର—
ପତିଗୃହଯାତ୍ରା ଆଜି, ଉଲ୍ଲସିତ ମନେ
ବିଦାୟ ଦିଅ ଆଶ୍ରମ-ମହୀରୁହଗଣେ ।"
ଏ କାଳେ ରାବନ୍ତେ ପିକ ତରୁଡାଳେ ବସି
ପଡ଼ନ୍ତେ ପୁଷ୍ପନିବହ ବାୟୁଯୋଗେ ଖସି
ତରୁଗଣେ ଏସବୁକୁ କରି ବ୍ୟପଦେଶ
ଦେଲେ ଅନୁମତି ବୋଲି ବୁଝିଲେ ମୁନୀଶ ।
ପ୍ରିୟସଖୀ ପାଇଁ ଶୋକେ ହୋଇ ଗଦଗଦା
ସଂହାଇ ଗଗନ ଚଳିପିଲା ପ୍ରିୟମ୍ବଦା ।
ଆସନ୍ନ ସଖୀବିରହେ ଅନସୂୟା ପୁଣି
କଣ୍ଠ ତା ମିଳାଇ କଣ୍ଠେ କାନ୍ଦିଲା ଦୁଃଖିନୀ !
ଶକୁନ୍ତଳା ବସନାନ୍ତ ଧରି ମୃଗଶାବ
ଟାଣନ୍ତେ ସ୍ମରଇ ମୁଖେ ବିଷାଦ ନୀରବ
ଭଣିଲେ ତାପସ, "ମା ଗୋ ! କୁଶାଗ୍ରେ ଯା ମୁଖ
କ୍ଷତ ହୁଅନ୍ତେ ମନେ ତୁମ୍ଭେ ବହି ଗୁରୁ ଦୁଃଖ

ଇଙ୍ଗୁଦ-ତଇଳ ଲେପି ଶୁଖାଇଲ ବ୍ରଣ,
ଶାବାରତଣ୍ଡୁଳେ ତୁମ୍ଭ ପୁଷ୍ଟ ଯା ପରାଣ,
ମାତୃହୀନ ସେହୁ ମୃଗଶାବ ତୁମ୍ଭ ଗତି
ବସନାନ୍ତ ଟାଣି ରୋଧେ, ବଧାବଧି ଅତି ।"
ସ୍ନେହାବେଗେ ବିଚଳିତ ହୁଅନ୍ତେ ଅନ୍ତର
ସମ୍ଭାଷିଲେ ଗୁରୁଶୀଳା ମୃଗଶାବେ ଗିର—
"ପାଳିଥିଲି ତୋତେ ତୋହ ମାଆ ଯାନ୍ତେ ମରି
ଅଛି ଗୋତ୍ତାଉ ଜ ବାପ ସେ କଥା ସୁମରି ?
ଯାଉଛି ମୁଁ, ପିତୃଦେବ ଆଜଠାରୁ ତୋତେ
ଲଟିଲେ ରେ ଧନ ! ତୁହି ରହ ଏହିଠାରେ ।"
ଝରିଲା ନୟନୁଁ ନୀର, ହେଲା କଣ୍ଠରୋଧ,
ନ ମାନିଲେ ସ୍ନେହଶୀଳା କାହାରି ପ୍ରବୋଧ ।
ଶାର୍ଙ୍ଗରବେ ଗୃହୀଁ ମୁନି ଭାଷନ୍ତ ଏକାଳେ
"ଶକୁନ୍ତଳା ସହ, ବାପ ଯିବ ନୃପ-ଆଳେ
ଭାଷିବ ତାହାଙ୍କୁ ଆମ୍ଭେ ବନବାସୀଜନ
ତପସ୍ୟା ବିହୁନେ ଆମ୍ଭ ନାହିଁ ଆନ ଧନ ।
ସରଳା ଏ ଶକୁନ୍ତଳା ପ୍ରଣୟ ପ୍ରବୃତ୍ତି
ସରଳ ବେଶରେ ପ୍ରକାଶିଛି ତାଙ୍କ ପ୍ରତି ।
କଳଙ୍କକାଙ୍କ୍ଷିତ କାନ୍ତ-ସରାଗ-ସମ୍ଭାର
ଲଭିଲେ ସେ ହେବ ତୋଷ ଅନ୍ତର ଆମ୍ଭର ।
ନ ମାଗୁଁଛୁ ଆନ କିଛି"—"ଶୁଣ ଶକୁନ୍ତଳେ !
ଆଚରିବ ଗୁରୁଜନ ସେବା ପତି-ଆଳେ ।
ମଣିବ ସପତ୍ନୀ ଗଣେ ପ୍ରିୟସଖୀ ସରି,
ନ ଧରିବ ପତିଦୋଷ ରାଗେ ହୁଡ଼ି କରି ।

ପତି ରୁଷ୍ଟ ହେଲେ ହୋଇ ବିରୁଦ୍ଧାଚରଣୀ
ନୋହିବ କଦାଚ ତାଙ୍କ ବିପ୍ରିୟଭାଗିନୀ ।
ବିଳାସେ ଆସକ୍ତ କେବେଁ ନୁହେଁ ଗୋ ଉଚିତ,
ପରିଜନେ ଅନୁକମ୍ପା ବହିବ ମା ! ନିତ୍ୟ ।
ଏଥିର ଅନ୍ୟଥା କଲେ ମିଳେ ଅପଯଶ
ଅପ୍ରିୟ ହୁଅଇ ବନ୍ଧୁ ସଭିଙ୍କ ଅବଶ୍ୟ ।
ବାଅ ମା ! ମେଲଣି ଏବେ ସଖିଙ୍କି ଲୋ ତୋର
ନ ଯିବେ ତୋ ସହ ସେତ ଆଉ ବେଶି ଦୂର ।
ମୋରେ ମା ! ମେଲଣି ଦିଅ, ହୋଇ ଶୁଭାଶିଷ
ପୂରନ୍ତୁ କାମନା ତୋର ପ୍ରଭୁ ଜଗଦୀଶ ।
ପ୍ରାଚୀ ପ୍ରସବଇ ଯଥା ସହସ୍ରଦୀଧିତି
କୁମାର ତେସନ କୋଳେ ବହିବୁ ଆୟୁଷ୍ମତି !
ମୋ ବିଚ୍ଛେଦ କଥା ଭାବି ହୁଅ ଗୋ ବିସ୍ମୃତ,
ବିଷୟବ୍ୟାପାରେ ସଦା ନିବେଶ ମା ! ଚିତ୍ତ ।"
ଶୋକାତୁରା ଶକୁନ୍ତଳା ସଖିଙ୍କି ଆଲିଙ୍ଗି
ଭାଷନ୍ତି, "ମେଣ୍ଟ ଆମ୍ଭର ବନ୍ଧ ଦେଲା ଭାଙ୍ଗି
ସଖୀଏ ! ଏହି କି ମୋର ଶେଷ ଆଲିଙ୍ଗନ ?
ଏହି କି ଲୋ ଏ ଆଶ୍ରମେ ଶେଷ ସମ୍ଭାଷଣ ?
ପ୍ରିୟମ୍ବଦେ ! ଅନସୂୟେ ! କହ ମତେ କରି
ଦୁଃଖିନୀର ସ୍ମୃତି ଚିତ୍ତେ ଥିବଟି କି ଧରି ?
କହ ତାତ ! କହ କେବେ ଆସି ଏ ରଙ୍କୁଣୀ
ନିରେଖିବ ନେତ୍ରପୁଟେ ଏ ଆଶ୍ରମ ପୁଣି ?
ଭାଷିଲେ ତାପସ, "ମାଗୋ ବିଶାଳ ଅବନୀ
ସପତ୍ନୀ ସମାନ ଲଭି ହୋଇ ରାଜରାଣୀ

ଜଗତେ ଗାର୍ହସ୍ଥ୍ୟ ଦେଇ ସୁତ କରେ
ଆଚରିବ ବାନପ୍ରସ୍ଥ ଏହି ଆଶ୍ରମରେ ।
ସେ ଅଛି ବହୁତ ଦିନ ନୁହ ଗୋ ଚିନ୍ତିତା,
ପତିଗୃହେ ପତିସେବା କର ପତିବ୍ରତା !
ତପସ୍ୟାର ବେଳ ଏବେ ହୋଇଲାଣି ଆଗତ—
ଯାଅନ୍ତୁ ମା ! ନିରାପଦ ହେଉ ତୁମ୍ଭ ପଥ ।"
ନମି ପଦେ ଶକୁନ୍ତଳା ଗଲେ ପତିଗୃହ
ଶାର୍ଙ୍ଗରବ, ଶାରଦ୍ୱତ, ଗଉତମୀ ସହ ।
ଚନ୍ଦ୍ରିକା ବିହୁନେ ଯଥା ଦିଶଇ ଯାମିନୀ
ଦାମିନୀପ୍ରୟାଣେ ଯଥା ଦିଶେ କାଦମ୍ବିନୀ,
ଶକୁନ୍ତଳା ଯାନ୍ତେ ତଳ ତଥା ତପୋବନ
ଦିଶିଲା ସପଦି ହତଶିରୀ, ଅଶୋଭନ ।

# ମୋ ଜନ୍ମଭୂମି

( ଶ୍ରୀ ରାଧାନାଥ ରଥ )

ତୁହି ଗୋ ଜନମ ଭୂଇଁ ଜୀବନଦାୟିନୀ
କା ଯେନ ବିଷାଦ କପାଁ ତୁ ଅଭିମାନିନୀ ?
ସରଳ ତରଳ ପ୍ରାଣେ ତୋ କୋଳେ ବିଚରି
ନିରେଖଇ ରୂପେ ତୋର ମରତ-ମାଧୁରୀ ।
ନିତ ନିତ ଆସି ତୋରେ ସେବକ ତପନ,
ଅବିରତ ଆଲିଙ୍ଗଇ ମଳୟ ପବନ ।

ସୁନୀଳ ଅମ୍ବର ତୋର ବିଚିତ୍ର ବିତାନ,
ଆଲୋକ ପଲକେ ମେଣ୍ଟେ ତାମସ-ନିଧାନ ।

ଅଗଣିତ-ତାରାରାଜି-ଖଚିତ ଗଗନୁ
ସୁଧାକରକରେ ତୋର ଉଜଳଇ ତନୁ ।
ନବୀନ ନୀରଦ ବ୍ୟାପି ଆସି ତୋ ଲପନେ
ନୀରଧାରେ ଧୋଇ ତୋରେ ଶ୍ୟାମଳ ବସନେ—

ସଜାଇ ଯତନେ ଖଞ୍ଜେ ସୁମନସମ୍ଭାର,
ପୁଲକଇ ପ୍ରାଣେ ତୋର ସୁରଭିନିଙ୍କାର ।

ତୋ ଅଞ୍ଚଳ ବିଚିତ୍ର ଗୋ ଶ୍ୟାମ ଦୂର୍ବାଦଳେ,
ତୋ କର ମୃଣ୍ଡିତ ଗୁରୁ ଶ୍ୟାମ ଶସ୍ୟମାଳେ ।

ତୋ ଅଙ୍ଗେ ଗୃମର ଦୋଳେ ପାଦପ ଶିଖର,
ତୋ ସନ୍ତାନେ କ୍ଷୀର ମାଗୋ, ଗିରି-ନଗ୍ନ ଧାର ।

ବନ ଲତା କୁଞ୍ଜ ତୋର ଶିକ୍ଳଣ ଟିଙ୍କୁର
ତୁଙ୍ଗ ଶ୍ୟାମ ଗିରି ତୋର କବରୀ ମଞ୍ଜୁଳ ।

ନବାଲୋକେ ଫୁଟେ ତୋର ଅଧରେ ସୁହାସ,
ନିଶୀଥ ତାମସ ତୋର ନିଦ୍ରାର ଆଭାସ ।
ଶ୍ରବଣେ ଶୁଣାନ୍ତି ତୋରେ ବିହଙ୍ଗ କାକଳି,
ଅଶେଷ ଅନନ୍ତ ଛନ୍ଦେ ସଙ୍ଗୀତ ଲହରୀ ।
ସନ୍ତାନ ତୋ କୋଳେ ମା ଗୋ ମାନବ-ସଂସାର,
ଜୀବଜନ୍ତୁ ପଶୁକୁଳ ତୋର ପରିବାର ।
ସର୍ବେ ଭୁଞ୍ଜି ସମସୁଖେ ପାନ୍ତି ଲୋ ଜନନି !
ତୋ ନେତ୍ରେ ସୃଜିଲେ ସବୁ ଦିବସ ରଜନୀ ।
ସୁନୀଳ ପୟୋଧି ତୋରେ ଅନନ୍ତ-ଅମୃତ,
ତୋ ବୁକୁରେ ସେହି ସୁଧା ସାଗର ସଞ୍ଚିତ ।
ତୋ ସ୍ନେହ ଜନନୀ ହୃଦେ ଦିବ୍ୟ ପ୍ରକଟିତ,
ତୋ ନିର୍ଦ୍ଦେଶେ ଜୀବ-ଧର୍ମ ସଦା ନିୟନ୍ତ୍ରିତ ।
ସ୍ୱଜନ-ସେନେହ-ସୁଖେ ତୋର ଆଶୀର୍ବାଦ,
ସ୍ୱଜନ-ବିଚ୍ଛେଦ ଦେଖେ ଜନନି, ତୋ ଖେଦ ।
ସ୍ଥାବର ଜଙ୍ଗମ ସେବା ତୋ ପାଳନ-ସୁଖ,
ପ୍ରାଣୀର ବେଦନା ତୋର ସୂଚଏ ଅସୁଖ ।
ତୋ ପ୍ରୀତି-ପ୍ରସୂତ ପୂତ ବନ୍ଧୁତ୍ୱ ଆଧାର—
ପିତା ମାତା ଭାଇ ବନ୍ଧୁ ସ୍ୱଜନ ସଂସାର ।
ତୋ କୋଳେ ଆଶ୍ରିତ ଜନେ ଅତ୍ୟନ୍ତ ସୋଦର,
ସର୍ବେ ସମଭାବ ସର୍ବେ କରନ୍ତି ଆଦର ।
ସମବୁଦ୍ଧି ସମଚିନ୍ତା ସମଦରଶନ
ଶୁଦ୍ଧପୂତ ସ୍ୱାର୍ଥ-ଯଜ୍ଞେ ମୁକ୍ତିର ସାଧନ ।
ଶ୍ରବଣ ମନନ ଧ୍ୟାନ ତୋ କୀର୍ତ୍ତି କଥନ,
ତୋ କୋଳେ ଜନମ ପୁଣି ତୋ କୋଳେ ମରଣ,

ତୋହର ଋଷଣ ହେଉ ଜୀବନ-ବିଳାସ
ତୋହର ବିକାଶେ ହେଉ ମୋ ଆତ୍ମା-ପ୍ରକାଶ ।
ବିଶ୍ୱ ତୋ ବିଜୟେ ଲଭୁ ଶୁଭ୍ର ସମାଦର
ବିଶ୍ୱ ଧର୍ମ ସାଧନେ ତୁ ଏକାନ୍ତ ଆଧାର ।
ହେଲା କିବା ପୂଜା-ଉପଯୋଗେ ବ୍ୟତିକ୍ରମ,
ତେଣୁ ଗୋ ଜନନି ! ଆଜ ଏ ବିଚ୍ଛେଦ ମମ ?
ଏ ନୁହେଁ ଉପେକ୍ଷା, ଏହା ପୂଜନେ ପରୀକ୍ଷା
ବାସନାବିହୀନ କର୍ମ ସାଧନେ ଏ ଦୀକ୍ଷା ।
ତୋହର ସେବାରେ ଆସେ ଶାନ୍ତି ନିରନ୍ତର,
ତୋ ପଦ ପରଶେ ମା ଗୋ ପୁଲକେ ଅନ୍ତର,
ତୋହର ବନ୍ଦନେ ସିନା ବିଭୁ ସଂକୀର୍ତ୍ତନ,
ତୋହ ଆଶୀର୍ବାଦେ ଧନ୍ୟ ହେଉ ଗୋ ଜୀବନ ।

---

# ପୁରୀ ମନ୍ଦିର

( ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ବି. ଏ. )

କାଷ୍ଠ-ପାଷାଣ ଗଠିତ ହେ ନିର୍ଜୀବ ଦେବତା ମୂରତି ।
ଏ ଦେଶ ଶୋଣିତେ ଆଜ ଜାଗ୍ରତ ଯେ ଈଶ୍ୱର ଭାରତି
ମାନବର ଶିଳ୍ପକଳା କଳ୍ପନା-ଘଟିତ
ଯୁଗ ଯୁଗ ଧରି ଯାହା ହୋଇଛି ଗଠିତ
ମାନବର ହସ୍ତେ ବନ୍ଦୀ ରୂପ
ଭାଗ୍ୟେ ତାର କରୁଛ ବିଦ୍ରୂପ,
ଅନ୍ତର ଗୁହାରି
ଶୁଣିକ ତାହାରି,
ଶୂନ୍ୟ ପ୍ରାଣ
ହେ ପାଷାଣ ?
ନ ଲଭି ସାନ୍ତ୍ୱନା କାହିଁ ଭଗ୍ନପ୍ରାଣ ମାନବ ସନ୍ତାନ
କାଷ୍ଠ ପାଷାଣର ଦେହେ କରିଇ ସେ ଦେବତା ନିର୍ମାଣ,
କୋମଳ ମଧୁର ଯାହା କରି ଆରାଧନା
ହୋଇବ ଯେଣୁ ଉପଶମ ଅନ୍ତର ବେଦନା,
ବ୍ୟାକୁଳ ହୃଦୟେ ଲୋଡ଼େ ସ୍ନେହ
ଦୟା କ୍ଷମା ପାଷାଣର ଦେହୁଁ,
ପାଷାଣର ଗାତ୍ରେ
ମସ୍ତକ ଆଘାତେ
ଅକାରଣ
ଅଶରଣ !

ହେ ପାଷାଣ, ମାଗୁ ନାହିଁ ଶମିବାକୁ ମୋ ମରମଜ୍ୱର,
କ୍ଷମିବାକୁ ଅପରାଧ, ଲୁଚିବାକୁ ବ୍ୟର୍ଥତା ଆଶାର,
ଲୋଡ଼ୁ ନାହିଁ ଲଭିବାକୁ ତବ ଅନୁଗ୍ରହ
ଧନ ମାନ ଯଶ ଖ୍ୟାତି ଅଭୟ ହୃଦୟ,
ମୃତ୍ୟୁପରେ ମୁକ୍ତି ନାହିଁ ମାଗେ
ବଇକୁଣ୍ଠ ନାହିଁ ଭଲ ଲାଗେ,
ଏ ମର୍ତ୍ତ୍ୟ ଭୁବନ
ମୋ ସ୍ନେହ-ସଦନ
ଏ ଧରଣୀ
ସୁଖ ମଣି !

ଜୀବନର ଭାବନାରେ ବନ୍ଧାଯାଏ ମୋର ପ୍ରତିକ୍ଷଣ,
ନାହିଁ ବେଳ କରିବାକୁ ମୁକ୍ତି ଅବା ମୃତ୍ୟୁର ଚିନ୍ତନ,
ଲଭିଅଛି ଯେ ସମ୍ପଦ ଏ ମର ଜୀବନେ
ମିଳିବ ସେ କେବେ କେଉଁ ଅମର ଭୁବନେ ?
ଏ ଜୀବନେ ଲଭିଛି ଯେ ନିଧି
ତୁଚ୍ଛ କରିଦିଏ ସ୍ୱର୍ଗ ସିଦ୍ଧି,
ଭୋଗିବାକୁ ତାହା
ବେଳ ନାହିଁ, ଆହା !
କିବା ଲୋଡ଼ା
ସ୍ୱର୍ଗ ଯୋଡ଼ା ?
ଏ ଧରାର ସୁଖ ଦୁଃଖ ସ୍ନିଗ୍ଧ ରୁକ୍ଷ ସୁନ୍ଦର କୁତ୍ସିତ
ଅତି ଆଦରର ମୋର, ଏ ଜୀବନେ ଅତି ପରିଚିତ
କେତେ ଆଶା କେତେ ମୋର ଅଳଙ୍କାର ଧନ
ଛାଡ଼ି ମୁହିଁ ନ ଲୋଡ଼଼ଇ ସ୍ୱରଗଭୁବନ,

ଜନମର ଅମୃତ ସେନେହ
ଲଳିତ କରଇ ଏ ଯେ ଦେହ,
ଆଶିଷ ପିତାର
କଲ୍ୟାଣ ଆଧାର
ଏତେ ପ୍ରାଣ
ଏତେ ଦାନ !

ସକଳ ମମତା ତେଜ ନ ଖୋଜଇ ମୁକତି ମାରଗ ।
ହୁଅଇ ନାସ୍ତିକ ପଛେ, ନ ଲୋଡ଼ଇ ଅପର ମରତ,
କି ଆନନ୍ଦ ନହିଁତ ସେ ସ୍ୱର୍ଗ ପରବାସେ,
ହୁଏ କି ତା' ସୁଷମିତ ଶିଶୁର ସୁହାସେ ?
ସେ ସଙ୍ଗୀତ ପ୍ରିୟାର ନୂପୁରେ
ଅଛି କେଉଁ ବଇକୁଣ୍ଠ ପୁରେ ?
ପ୍ରିୟା-ରୂପ-ଶଶୀ
ସେ କେଉଁ ଉର୍ବଶୀ
ପାରେ ଜିଣି
ଗରବିଣୀ !

ତଥାପି ନମଇଁ ତୋତେ ହେ ନିର୍ଜୀବ କର୍କଶ ପାଷାଣ !
ଘନୀଭୂତ ଏଥି ଯେଣୁ କେତେ ପୁଣ୍ୟ ଶିଳ୍ପୀର ପରାଣ
ଯେ ସଜନ ଗଢ଼ିଲା ଏ ପାଷାଣର ଗିର
ଯେ ବରିଷ୍ଠ କଳ୍ପନାରୁ ଉଦ୍ଭୂତ ଏ ଶିର
ବିଶ୍ୱ ପାଇଁ କରିଲା ଦାଦନ
ଅନ୍ତରର ବିପୁଳ ବେଦନ,

ହେବାଙ୍କୁ ନିର୍ବାଣ ।
ଲୋଡ଼ିଲି ଅର୍ପଣ
ବିଶେଷ
କରି ଖର୍ବ ।

ତ୍ୟାଗର ମହିମା ଯେଣୁ ଏ ଦେଉଳ ଘୋଷଇ ପବନେ
ତ୍ୟାଗର ଜୟପତାକା ଉଡ଼ାଉଛି ଅନନ୍ତ ଗଗନେ,
ବିରାଟ ଯେ ଆତ୍ମା ଏହି ପାଷାଣେ ନିହିତ,
ଉଦ୍ଦେଶ୍ୟ ତାହାର ଆଜ ନମ୍ର ମୋର ଚିତ୍ତ
ରକତ ମାଂସର ଯେତେ ହସ୍ତ
ନିର୍ମିଲା ଏ ପ୍ରସ୍ତର ସମସ୍ତ,
ତାହାଙ୍କ ସକାଶେ
ଏ ପାଷାଣ ପାଶେ
ନମସ୍କାର
ବାରମ୍ବାର

ମାନବର ସୃଷ୍ଟି ଏ ଯେ ମାନବର ଅନ୍ତର ଆରତି,
ନମଇଁ ମୁଁ ତେଣୁ ଏଥି ଜଣାଏଁ ମୋ ବ୍ୟଥାର ଭାରତୀ;
କାତର ଚିତ୍କାର କେତେ ଅନ୍ତରର ଦୁଃଖ
ଜଡ଼ ଏ ପାଷାଣ ଦେହେ ଲଭିଅଛି ମୂକ;
ଆଜ ଏହି ଦେଉଳ ଗହ୍ୱରେ
ଶତକଣ୍ଠ-ପ୍ରତିଧ୍ୱନି ଥରେ;
ମିଶାଇ ତା' ସଙ୍ଗେ
ଏ ମନ୍ଦିର ଅଙ୍ଗେ
କଣ୍ଠସ୍ୱର
ଉଠେ ମୋର ।

ଲୁକ୍କାୟିତ ବୃକ୍ଷ ମଧ୍ୟେ ମାନବପ୍ରାଣର ଆଶା ଆଦି
ଏ ପାଷାଣ ନମ୍ନେ ହୋଇ ସ୍ତୂପୀକୃତ ଲଭିଛି ସମାଧି,
ବିରହବିଧୁର କେତେ ଯୁବତୀ ପ୍ରାଣର,
ସନ୍ତାନହୀନାର କେତେ ଶୋକ-ଅଶ୍ରୁ-ବାରି
ହୋଇଅଛି ଏଥି ଘନୀଭୂତ,
ଅନ୍ତରର ବାସନା ଅଯୁତ,
କେତେ ନିରାଶ୍ରୟ
ଲଭିଛି ଅଭୟ
ସଙ୍ଗୋପନେ
ଆଶାମନେ !

ଶ୍ରେଷ୍ଠ ମାନବ-ଅନ୍ତର କେତେ ଏଥି ଆସିଅଛି ଧାଇଁ;
ଭକତ ପ୍ରେମର କେତେ ରସଉତ୍ସ ଦେଇଛି ବୁହାଇ;
ତରଳାଇ ନିର୍ଜୀବ ଏ ପାଷାଣର ଅଙ୍ଗ
ଜୀବନ ରସର କେତେ ଉଠିଛି ତରଙ୍ଗ
କେତେ ଶତ ଜୀବନ୍ତ ଦେବତା
ବିଶ୍ୱପାଇଁ ପ୍ରକାଶିଛି ବ୍ୟଥା
ଏ ଶିଳା ବିଚିତ୍ର
ହୋଇଛି ପବିତ୍ର
ଲଭି ଯେଣୁ
ପଦରେଣୁ !

ଆଦର୍ଶ ଯାହାର ମହା ସାମ୍ୟମାତ୍ର ନାହିଁ ଭେଦ-ଜ୍ଞାନ,
ମାନବଶିଶୁର ଯହିଁ ନାହିଁ ଜାତି-ଦ୍ୱେଷ ଅପମାନ
କବୀର, ନାନକ, ବୁଦ୍ଧ, ଚୈତନ୍ୟ, ଶଙ୍କର
କଲେ ଯହିଁ ସମାବେଶ ସକଳ ଧର୍ମର

ଲେଖିଲେ ଏ ପାଷାଣରେ ଗତେ
"ସକଳ ଯେ ସମାନ ଜଗତେ"
ସବୁ ବଡ଼ ସାନ
ଦୀନ ଧନବାନ
ନତମୁଣ୍ଡ
ଏଥି ଝୁଣ୍ଡ ।
ଯେତେ କୋଟି ଯାତ୍ରୀପଦ ପଡ଼ିଛି ଏ ମନ୍ଦିର ଦୁଆରେ,
ଭବିଷ୍ୟତେ ଯେତେ ପୁଣି ଲାଗିବ ଏ ପାଷାଣ ଦୁଆରେ,
ନ ରହିବ ଇତିହାସ ନ ରହିବ ଚିହ୍ନ,
ଏ ପାଷାଣ-ଗାତ୍ର କାହିଁ ନୋହିବ ବିଦୀର୍ଣ୍ଣ !
କିନ୍ତୁ ସେ ଯେ ବିଶ୍ୱାସ ଭକତି
ତା' ଉଦ୍ଦେଶ୍ୟେ ଜଣାଏ ମୁଁ ନତି
ମାନବ ଜୀବନେ
ଅମୂଲ୍ୟ ଏ ଧନେ
ନମସ୍କାର
ବାରମ୍ବାର ।

---

# ଗାନ୍ଧାରୀର ଆଶୀର୍ବାଦ

( ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ବି. ଏ. )

ଜନନୀର ପଦେ ନତ କରି ଶିର
ମାଗେ କୁରୁ-ଚୂଡ଼ାମଣି,
"ଶତ୍ରୁ ସଇନ ପଦେ ଦଳି ଆସେଁ
ଭିକ୍ଷା ଦିଅ ଜନନୀ !
ଅରାତିବିହୀନ କରି ଏ ଧରଣୀ
ବିଜୟର ଟୀକା ବାନ୍ଧି
ଫେରି ଆସେଁ ମାତ, ଦିଅ ଗୋ ଆଶିଷ,
କରଗତ କରି ମହୀ ।
ଶତେକ ପୁତ୍ର— ଜନନୀ ତୁହି ମା,
ଶ୍ରେଷ୍ଠ ଏ ଧରାତଳେ,
ତୋ ଆଦେଶେ ମାତ ଏ ତିନି ଭୁବନ,
ବାନ୍ଧି ପାରିବୁଁ ବଳେ ।"
ଶତେକ ପୁତ୍ର— ଜନନୀ ଭାଷଇ
କୋମଳ ମଧୁର ଗିର,
"ଅଭିଳାଷ ଯେବେ, ରଣ-ପ୍ରାଙ୍ଗଣେ
ଅବତର ଆରେ ବୀର !
କୁରୁମଣି ! ଯେବେ ଆଶିଷ ତୋହର
ଜନନୀର ବରାଭୟ,
ଅକ୍ଷୟ ହେଉ ପୁଣ୍ୟ ଜଗତେ,
ଧର୍ମର ହେଉ ଜୟ ।"

ହାଇ ରେ ଜନନୀ— ହିଆ କି ମଠର
ଏ କି ହେଲା ଆଶୀର୍ବାଦ ।
ଜନନୀର ମୁଖେ ଶୁଣିଁ କୁରୁବୀର
ଗଣେ ଶାନ୍ତି ପରମାଦ ।
ଶାନ୍ତ ମହିମା ଖେଳୁଛି ସେ ମୁଖେ
ଫୁଟିଛି ବଲେଲ ହାସ,
ଶତେକ ପୁତ୍ର ସମରେ ପଠାଇ
ନ ଜାଗେ ବେଦନା ଶ୍ୱାସ ।
(ନୟନର କୋଣେ ନ ଜାଗେ ଅଶ୍ରୁ
ଝଳକେ କାନ୍ତ ଜ୍ୟୋତି,
ନବାକେ ବୀର ନିରେଖେ ଏ ରୂପ
ସ୍ତବ୍ଧ କାତର ମତି ।)
ଆଶିଷ କି ଅବା ଅଭିଶାପ ଏ ଯେ,
ପୁତ୍ର ନ ପାରେ ଜାଣି
ସହଜ ଗତରେ ବଚନ ଭାଷଇ
ଧୃତରାଷ୍ଟ୍ରର ରାଣୀ—
"ଯାଅ ବୀର, ରଣେ ଧରଣୀ-ବକ୍ଷୁ
ପାପରାଶି ହେଉ କ୍ଷୟ,
ଅକ୍ଷୟ ହେଉ ପୁଣ୍ୟ ଜଗତେ
ଧର୍ମର ହେଉ ଜୟ ।
ଶତେକ ପୁତ୍ର ଲୁହେ ଖାଲି ମୋର
ଲୁହଇ ବରୁ ଜଣେ,
ସର୍ବେ ମୋହର ପ୍ରିୟ ସନ୍ତାନ
ଆଜି ଏ ଧରମ-ରଣେ ।

ଭୀମ ଅର୍ଜୁନ ଧର୍ମନନ୍ଦନ
କେହି ନୁହେ ମୋର ଆନ,
ପାଣ୍ଡବ ସେନା କୁରୁସେନା ବୀର
ମୋଠାରେ ସବୁ ସମାନ ।
ବକ୍ଷ ଫଗାଡ଼ି ରୁଧିର ଦେଲି ଯେ
ଶତପୁତ୍ରରେ ଢାଳି,
ସବୁ ଜନଙ୍କର ଅନ୍ତର ସେ କି
ନ ପାରେ ହୃଦୟେ ଭାଳି ।
କୁରୁ-ଚୂଡ଼ାମଣି, ତୋ ନିଧନ ଯେତେ
ବେଦନା ଦେବ ରେ ପ୍ରାଣେ
ଅର୍ଜୁନ ବଧ 'ତହୁଁ ଊଣା ଶୋକ
ଦେବ ନାହିଁ ଭଲେ ଜାଣେ ।

ଯାଅ ବୀର, ରଣେ ଦେଉଛି ମେଲଣି
ନ କର ଦୁଃଖ ହୃଦୟ,
ଅକ୍ଷୟ ହେଉ ପୁଣ୍ୟ ଜଗତେ
ଧର୍ମର ହେଉ ଜୟ ।"
ଧନ୍ୟ ଜନନୀ, ଧନ୍ୟ ସେ ହିଆ
ଗଠିତ କି ଉପାଦାନେ,
କ୍ଷଣେ, ସହସ୍ର ସନ୍ତାନ ଲଭି
ବେଦନା ଗଳଇ ପ୍ରାଣେ ।
'ଜୟୀ ହୁଅ' ବୋଲି ଆପଣା ପୁତ୍ରେ
ମୁଖୁଁ ନ ଫୁଟିଲା ବାଣୀ
ଶତ ପୁତ୍ରର ଜନନୀ ହୋଇ ସେ
କୋଟି ବିଶ୍ୱର ରାଣୀ ।

ଶତଜନମର ଅନ୍ତର ଜଳ
ଆର୍ଦ୍ର କରନ୍ତି ପ୍ରାଣ,
ଶତପୁତର ଜନମ ତତେ
ଛୁଇଁ ନାହିଁ ଅଭିମାନ ।
ଖିନ୍ନ ଦୁଃଖର ଜୟ ପରାଜୟ
ଗାନ୍ଧାରୀ ନାହିଁ ବୁଝେ,
ସକଳ ସମାନ କରି ସେ ଦେଖଇ
ଆଜି ଧର୍ମର ଯୁଝେ ।
ଗାନ୍ଧାରୀ ଦେଲା ଜନନୀ ପ୍ରାଣରେ
ସୁମଙ୍ଗଳ ପରିଚୟ,
ଅକ୍ଷୟ ହେଉ ପୁଣ୍ୟ ଜଗତେ
ଧର୍ମର ହେଉ ଜୟ ।"

# ଛୋଟ ମୋର ଗାଆଁଟି

( ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ବି. ଏ. )

ଛୋଟ ମୋର ଗାଆଁଟି,
ଭୂଗୋଳ ପୋଥି-ପତ୍ରରେ ପଢ଼େ ନ ଥାଉ ତାର ନାଆଁଟି ।

ମାଟିର ସେଇ ସରଗ ମୋର,
ସେଇଠି ଅଛି ମୋ ଝଠୀଘର ।
ଜଳିବ ପୁଣି ସେଇଠି ଶେଷେ
ମୋହର ଚିତା ନିଆଁଟି ।
ଛୋଟ ମୋର ଗାଆଁଟି ! ୧ ।

ଜନମି ତାର ଏନ୍ଦୁଡ଼ଶାଳେ
ବୁଲିଛି କେତେ ତା ତୋଟାମାଳେ ।
ଛାଡ଼ିଛି ମୋର ପଞ୍ଜରା କାଠି;
(ଶେଷେ) ସେଇଠିହେବ ଡାହାଣି
ଛୋଟ ମୋର ଗାଆଁଟି ! ୨ ।

ତାହାର ଜଳ ରକତ ହୋଇ
ଶିରାରେ ବହେ ଯେସନ ନଈ;
ନିଶ୍ୱାସେ ମୋର ତାହାର ବାୟୁ
ଚଳାଏ ପ୍ରାଣ-ନାହାଟି ।
ଛୋଟ ମୋର ଗାଆଁଟି ! ୩ ।

ତାହାର ଫୁଲ, ଶାଗୁଆ ଲତା
କଣ୍ଠେ ମୋର ଦେଲା ସେ କଥା,
ଆଖିରେ ଦେଲା ରୂହାଣି ନୂଆ
(ତାର) ଫଗୁଣ ଉଷା ପାହାନ୍ତି ।
ଛୋଟ ମୋର ଗାଆଁଟି । ୪ ।

ଝରଣା ତାର କଲ୍ଲ ଯେ କଂଳ
ନୟନେ ଦେଲ ରୂପର ଛବି,
ବୁଦ୍ଧାଇ ଦେଲ ସପନ ଢେଉ
ପଥର ବୁକେ ନହାତି ।
ସ୍ନେହ ମୋର୍ ଗାଆଁଟି । ୫ ।

ତାହାର ଲଟା ତାହାର ବଣ,
ତା’ ଗାଈଗୋଠ ମୁରଲୀ ସ୍ୱନ,
ଫସଲକଟା ମଧୁର ଗାନ
ସକଳ ମୋର ସାହାଟି ।
ସ୍ନେହ ମୋର ଗାଆଁଟି । ୬ ।

ଆଲୁଅ ତାର କ ମନୋହର
ଅନ୍ଧକାର ତା ଠାରୁ ଭଲ,
ଜୀବନପଥେ ସକଳ ତାର
ଫିଟାଏ ନୂଆ ରାହାଟି ।
ସ୍ନେହ ମୋର ଗାଆଁଟି । ୭ ।

ଦୁନିଆକଣେ ବୃଖଣ୍ଡେ ଥାନ,
ଅଛି ସେ ସ୍ନେହ, ନହାଛି ସାନ,
ତଥାପି ସ୍ୱଲେ ଛବିଟି ଦୁରୁଁ
ଥରେ ମୁଁ ତାର ଗୃହାନ୍ତ ।
ସ୍ନେହ ମୋର ଗାଆଁଟି । ୮ ।

ଖୁଦର ତାର ଉଦର ତଳେ
କେତେ ଯେ ରଥୀ ଜନମ ନେଲେ ।
( କେତେ ) ନାଉଁଆ ଲୋକେ ଅଇଲେ ଗଲେ
ଆଜ ସେ·ସବୁ କାହାନ୍ତ ?
ସ୍ନେହ ମୋର ଗାଆଁଟି । ୯ ।

ଯେନରେ ଯେତେ ମାମଲ ବୃଦ୍ଧି
ଜନମିଥିଲେ ହରି ସୁବୁଦ୍ଧି
ଯାଥିକୁ ତାଙ୍କ ଗୋଦର ଗୋଡ଼
ମନ୍ତ୍ରୀ ତୁଣୀ ମାହାନ୍ତି ?
ଶ୍ରେଷ୍ଠ ମୋର ଗାଆଁଟି । ୧୦ ।

ଖଣ୍ଡିଆ କାହ୍ନୁ ଗାଆଁଟା ହେଲା
ଢୋଲରେ ନାଚେ ବଲୁଆ ପିଲା,
ଉଚ୍ଛନ୍ନ ହେଲେ ଆସାମ ଗଲେ
ଘରେ ତ ବୃଷ୍ଣୀ ନାହାନ୍ତି,
ଶ୍ରେଷ୍ଠ ମୋର ଗାଆଁଟି । ୧୧ ।

ପ୍ରତାପଶୀଳା ସାମନ୍ତରାୟ
ଗାଆଁରେ କଲେ ଏମନ୍ତ ରାୟ,
ଦେଏଣା ଘରେ ସକଳେ ଯାଆ
ରେଙ୍ଗାମ ଭୂଇଁ ଧାଆଁନ୍ତି ।
ଶ୍ରେଷ୍ଠ ମୋର ଗାଆଁଟି । ୧୨ ।

ଗାଆଁରେ ଥିଲେ କପିଳ ନନ୍ଦେ
ବୁଲିଲେ ଭୂଇଁ ଲସେ ଯେ ଖନ୍ଦେ ।
ସବୁ କଥାରେ ମୁରବ୍ବି ସାଜ
ହଲଉଥିବେ ବାହାନ୍ତି
ଶ୍ରେଷ୍ଠ ମୋର ଗାଆଁଟି । ୧୩ ।

ସରବାକାର ଅଗାଧୁ ଷଣ୍ଢ
ଗାଧୋଇ ସାରି ହଅନ୍ତି ଦଣ୍ଡ ।
ପୋଷିଲେ ଜଣେ, ଶୋଷନ୍ତି ପଣେ
କଲମ-କାଠି ଛୁଆଁନ୍ତି ।
ଶ୍ରେଷ୍ଠ ମୋର ଗାଆଁଟି । ୧୪ ।

ଚଉକିଦାର ଗୋବଣ୍ଡ ଖୋଇ
ଚିଲମ ଟାଣି ଗଡ଼ଟା ଶୋଇ
ସକାଳୁ କହେ, "ବୁଲାଇ ଦେଲା
ଚୋରଙ୍କୁ କାଲି ଭୂଆଁ ଟି।"
ଶ୍ରେଷ୍ଠ ମୋର ଗାଆଁ ଟି। ୧୫।

ଆବର ଥିଲା ଜଟିଆ ବୁଢ଼ୀ
ପିଲାଙ୍କ ବଡ଼ ସବୁର ଖୁଡ଼ୀ,
କା ଘରେ କେତେ ମୂଷାର ଗାଡ଼
ସବୁ ତା ଜଣେ ଥୁଆଟି
ଶ୍ରେଷ୍ଠ ମୋର ଗାଆଁ ଟି। ୧୬।

ମୁହଁଟା ତାର କାଢ଼ରୁ ଦାଢ଼
ପଣତ କାନ୍ଧ ଛୁଆଇଁ ବାଡ଼,
ଲଗାଇ କଳି ଫୁଟିବ ହାଡ଼
ଡାକବ କେତେ କୁହାଟି,
ଶ୍ରେଷ୍ଠ ମୋର ଗାଆଁ ଟି। ୧୭।

ଗାଆଁ ର ପୁଣି ବାଘୁଡ଼ି ଖେଳେ
କେଳୁଆ, ନାଥ, ଅଣ୍ଟା ମେଳେ
କେତେ କଳା ..., କେତେ କେ ମରେ,
ମରେ ନା ଖାଲି ଜାଆଟି,
ଶ୍ରେଷ୍ଠ ମୋର ଗାଆଁ ଟି। ୧୮।

ଗାଁର ଶେଷେ ଏକଣା ଘରେ
ବଉଳ ଫୁଲ ଯେଉଁଠି ଝରେ,
ଥିଲା ଯେ ପୁଣି ବିଧବା ଏକ
ବାଳୁତ ତାର ଛୁଆଟି।
ଶ୍ରେଷ୍ଠ ମୋର ଗାଆଁ ଟି। ୧୯।

ଧ୍ୱଷ ଖାଇ ଚଢ଼ଇ ମୁଳେ
ନଈ ସେ ଆସି ପ୍ରଣତି ଢାଳେ.
ଆକାଶ ଦୀପ ହୋଇ ସେଣ୍ଣ ଜଳେ
　　　　　　ଭେକଲ ତାର 'ସାହା'ଟି ।
　　　　　　ଶ୍ରେଷ୍ଠ ମୋର ଗାଆଁଟି । ୨୦ ।
ଏସବୁଁ କଥା ଛବିଟି ପରି
ପ୍ରବାସେ ମନେ ଉଠଇ ଜଳି ।
ଇଚ୍ଛା ହୁଏ ମାଟିରେ ତା'ର
　　　　　　ଶିରଟି ଥରେ ନୁଆନ୍ତି ।
　　　　　　ଶ୍ରେଷ୍ଠ ମୋର ଗାଆଁଟି । ୨୧ ।

---

# ଗ୍ରାମ୍ୟଶ୍ମଶାନ

( Grey's Elegy ର ଅବଲମ୍ବନରେ)

( ଶ୍ରୀ ଜଗନ୍ନାଥ ତ୍ରିପାଠୀ, ବି. ଏ., ବି. ଟି. )

ଆରତି-ଘଣ୍ଟା ବାଜେ ଦେବ ମନ୍ଦିରେ,
ପ୍ରାନ୍ତରେ ଫେରୁଛନ୍ତି ଗୋଧନ ଧୀରେ ।
କ୍ଳାନ୍ତ କୃଷକ ଫେରେ ନିଜ ସଦନେ,
ଗମ୍ଭୀର ଭାବ ଜାଗେ ମୋହର ମନେ । ୧ ।

ଲୁଚି ଯାଉଛି ସ୍ଥଳ— ଦୃଶ୍ୟ ବଦନ,
ଗମ୍ଭୀର ନିସ୍ତବ୍ଧତା ବ୍ୟାପେ ଭୁବନ ।
କେବଳ ଶୁଭେ ବନ— ମକ୍ଷିକା ନାଦ,
ଅବା ମନ୍ଦ୍ରିଷ ଗଳା ଟିପା ଶବଦ । ୨ ।

ଅଗ୍ରେ ଲତା-ଜଡ଼ିତ ତରୁ କୋଟରେ,
ପେଚକ ଶଶଧରେ ଗୁହାରି କରେ—
ବନ୍ଧୁ କାହିଁ ରାଜତ୍ୱ ଏଥି ମୋହରେ ।
ଦ୍ୱନ୍ଦ୍ୱ କଲାଏ ପାରି— ବଡ ପାମର । ୩ ।

ଏ ବୃକ୍ଷ ବଟ-ଗ୍ରନ୍ଥୀ— ତଳେ ମାରବେ,
ପର୍ଣ୍ଣ ଚିଜନ୍ତ ଶ୍ୟାମ— କୁଦ ସରବେ ।
ବସୋଇ ମାଗ୍ରୀ କରି— ଛନ୍ତି ଶୟନ,
ଏ କ୍ଷୁଦ୍ର ପଲ୍ଲୀ ପୂର୍ବ— ପୂରୁଷଗଣ । ୪ ।

ସୁଶୀତଳ ପ୍ରଭାତ ମନ୍ଦ ମରୁତ
ଅବା କଳ୍ପଲତାଶ୍ରୀ— ମଧୁର ରୁତ ।

ଚରଣାୟୁଧ-ଡାକ ଶିଙ୍ଗା-ନିସ୍ୱନ,
ଏଥିରେ ନ ଚେତିବେ ଆଜ ଶୟନ । ୫ ।
ତାଙ୍କ ପାଇଁ ଜଳିବ ନାହିଁ ଇନ୍ଧନ,
ଗୃହିଣୀ କାର୍ଯ୍ୟେ ନ କରିବ ଯତନ ।
ଦଉଡ଼ ନ ଆସିବେ ସନ୍ତାନଗଣ,
ଅଗ୍ରେ ଲଭିବା ପାଇଁ ପିତୃ ଚୁମ୍ବନ । ୬ ।
କେତେ ଶସ୍ୟ ସେ କାଟି— ଥିଲେ ସ୍ୱକରେ,
ଚଷି କଠିନ ଭୂମି ଲଙ୍ଗଳ ଗାରେ ।
କ ପ୍ରେମେ ନେଉଥିଲେ କେଦାରେ ହଳ,
ବନ ବଣ୍ଟିତ ଦେଖି ତାଙ୍କର ବଳ । ୭ ।
ଉଚ୍ଚାଭିଳାଷ ! ପରି— ହାସ ନ କର,
ଶୁଣି ତାଙ୍କର ତୁଚ୍ଛ ସୁଖ ଖବର ।
ରେ ଆଡ଼ମ୍ବର ! ତୁମ୍ଭେ ମନ୍ଦେ ନ ହସ,
ଶୁଣିଣ ନିଃସ୍ୱଙ୍କର ଏ ଇତିହାସ । ୮ ।
କ କୁଳ ଅଭିମାନ ବଳ ଗରିମା,
ସୌନ୍ଦର୍ଯ୍ୟ ସମ୍ପଦର ଯେତେ ମହିମା ।
ସର୍ବେ କାଳକୁ ବୁଝି— ଛନ୍ତି ସତତ,
କାରଣ ପ୍ରେତଭୂମେ ଦେଖାଏ ପଥ । ୯ ।
ଦାମ୍ଭିକେ ! ଏଥି କିନ୍ତୁ ଦୋଷ ନ ଧର,
ନାହିଁ ସ୍ମାରକସ୍ତମ୍ଭ ଶ୍ମଶାନପର ।
କହିବାକୁ ପ୍ରସଙ୍ଗ— କାହାଣୀ ଯାହା,
ଦେଖାଇଥାନ୍ତା ତାଙ୍କ ଜୀବନ ଗାଥା । ୧୦ ।
ଖୋଦିତ କୀର୍ତ୍ତି ଅବା ପ୍ରତିମୂରତି,
ଫେରାଇ ପାରିବ କ ଆତ୍ମାର ଗତି ?

| | |
|---|---|
| ସମ୍ମାନ ସ୍ୱରେ ସଞ୍ଚ— | ରିବ ଜୀବନ, |
| ତୋଷାମଦ କି ହେବ | ଶ୍ରୁତିରଞ୍ଜନ ? ୧୧ । |
| ମଣେ ଏ ସ୍ଥଳେ ଥିବେ | କେତେକ ଜନ, |
| ସ୍ୱର୍ଗୀୟ ସ୍ତବେ ଭରା | ଯାହାଙ୍କ ମନ । |
| କେ କରିଥାନ୍ତେ ରାଜ— | ଦଣ୍ଡ ଧାରଣ, |
| କେ ଲଭି ପାରିଥାନ୍ତେ | କବି ଆସନ । ୧୨ । |
| ପ୍ରାଚୀନ ଇତିବୃତ୍ତି | ଅମୂଲ୍ୟ ପେଡ଼ି । |
| ଜ୍ଞାନ-ଭଣ୍ଡାର ଭ୍ରମେ | ନ ଥିଲେ ଫେଡ଼ି । |
| ଦାରିଦ୍ର୍ୟ ଦେଲା ତାଙ୍କ | ମହତ୍ତ୍ୱ ସାରି, |
| ନରର କାହିଁ ଆଉ | ତେଜ୍ଞେ ଉଗାରି । ୧୩ । |
| କେତେ ଅମୂଲ୍ୟ ସ୍ୱଚ୍ଛ | ଉଜ୍ଜ୍ୱଳ ମଣି |
| ସାଗର ତଳେ ଅଛି | ଲୁହିଇ ଗଣି । |
| କେତେ ସୁବାସ ଫୁଲ | ଫୁଟେ କାନନେ, |
| ନଷ୍ଟ କରଇ ମଧୁ— | ରତା ବିଜନେ । ୧୪ । |
| ଥାଇ ପାରନ୍ତି ଏଥି | ଏମନ୍ତ ଜନ, |
| ହୋଇ ଥାଆନ୍ତେ ଯେହୁ | ଖ୍ରୀମ ସମାନ । |
| ମୂକ ମୁଖର ଅବା | ଥିବେ ଏ ସ୍ଥଳେ, |
| ନ ଲଭି ସମାଦର | କବି ମଣ୍ଡଳେ । ୧୫ । |
| ଅଥବା ଥିବେ ଏଥି | ପ୍ରତାପ ସିଂହ, |
| ସାହସ ପରାକ୍ରମେ | ଯେସନେ ସିଂହ । |
| ସ୍ୱପଦ ଦଳି ରକ୍ତ | ନଦୀରେ-ବାଟେ |
| ଖ୍ୟାତିଲାଭ ନ ଥିଲା | ତାଙ୍କ ଲଲାଟେ । ୧୬ । |
| ସଭାସଦ-ମଣ୍ଡଳୀ | ସ୍ତୁତି ଗ୍ରହଣ । |
| ଦେଖାଇ ଦୁଃଖେ ହୃଦୟେ | ସେ ହେସ୍ତୁ ଜ୍ଞାନ । |

ସ୍ୱଦେଶ ଜୟ ଅବା — ଜାତି ଗଠନ,
ତାଙ୍କ ଧ୍ୟେୟ ନ ଥିଲା — ଏତେ ସମ୍ମାନ । ୧୭ ।
ଗୁଣ ନ ଥିଲା, ମାତ୍ର — ନ ଥିଲା ଦୋଷ,
ଅଭାବ ଦୂର କରି— ଥିଲା ସନ୍ତୋଷ ।
ନିଷ୍ଠୁର ହୃଦେ ବଧି — ସୋଦରଗଣେ,
ସିଂହାସନ ଲାଳସା — ନ ଥିଲା ମନେ । ୧୮ ।
ପାପଜନିତ ଲଜ୍ଜା — ଢାଙ୍କିବା ପାଇଁ,
ସତ୍ୟ ଗୋପନେ ଯେତେ — ଯନ୍ତ୍ରଣା ଭାଇ !
ବିଳାସ ଅଭିମାନ — ପାଦ ପୂଜନ,
ଅନୁଭବ ନ ଥିଲା — ସ୍ୱପ୍ନେ ଏମାନ । ୧୯ ।
ତେଜି ଭବଚଞ୍ଚଳ — ମତ୍ତ ଭାବନା,
ସୁପଥଗାମୀ ହେବା— ଥିଲା ବାସନା ।
ଶୀତଳ ଛାୟାମୟ — ଜୀବନ ପଥେ,
ସଂଯତ ଚିତ୍ତେ ଚଳୁ— ଥିଲେ ନିରତେ । ୨୦ ।

# କବିର ସଂସାର

(ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର, ଏମ୍. ଏ., ଡ଼. ଇଡ଼.)

ଅନ୍ତର ତୁମ କବି ହେ
ମୁଗ୍ଧ ଯେ ଶର    ଶୁଭ୍ର ଗଧାର
ଦିବ୍ୟ ରସରେ ଦ୍ରବ ହେ,
ମଧୁମୟ ସୁର-ଜାହ୍ନବୀ-ଧାର
ଅନ୍ତରୁ ତୁମ ନିଃସରେ ସାର
ବଶେ ଭସାଇ    ନିଃସ୍ୱେ ହସାଇ
ଚଳାଇ ପାରେ ପବି ହେ
ଅନ୍ତର ତୁମ କବି ହେ ।

---

ସାହାରା ଶିହରେ ହସେ ହେ,
ଯେବେ ହସ ତୁମେ    କର୍କଶ ଭୂମେ
କୋଟିଏ ସୁଷମା ଖସେ ହେ,
ପ୍ରଖର ଗ୍ରୀଷ୍ମେ ବର୍ଷା ଆସାରେ
ଝଞ୍ଜା ପବନେ କରକା ତୁଷାରେ,
ଇଙ୍ଗିତେ ତବ    ଚକ୍ଷଣେ ନବ
ସଂସାର ପ୍ରେମେ ରସେ ହେ,
ସାହାରା ଶିହରେ ହସେ ହେ ।

---

କବିତା-କୁହୁକବନେ ହେ,
ପ୍ରବଳ-ପ୍ରଳୟ— ବକ୍ଷେ ମଳୟ
ରଚି ପାର ରବିତଳେ ହେ,
ଦୁଃଖୀ ଯେ ତୁମ ପ୍ରିୟତମ ସଖା,
ଦୁଃଖେ ହିଁ ତୁମ ସଙ୍ଗୀତ ମଖା,
ଦୁଃଖର ଗୀତି ଶାଶ୍ୱତ ମୀତି
(ତହିଁ) ପରମ ଆସନ ଠନେ ହେ,
କବିତା-କୁହୁକବନେ ହେ ।

---

କଷଣ ଯାହାକୁ କହ ହେ,
ଅଦ୍ଭୁତେ କର ଶାନ୍ତ ଆକାର
ସ୍ୱର୍ଗ ନବେଶି ତହିଁ ହେ,
ଦାୟେ ତୁମ ଅନ୍ତର ବାଣୀ
କ ମଧୁର ହୁଏ ନାହିଁ ପରମାଣି
ପୁଣ୍ୟ ବପଦ ଈଶ୍ୱର ପଦ
ଟାଣିଆଣେ ନର ମହୀ ହେ,
କଷଣ ଯାହାକୁ କହ ହେ ।

---

ତୋଳଲେ କରୁଣ ତାନ ହେ,
କାନ୍ଦେ ପଥର ବୃକ୍ଷେ ପତର
କାନ୍ଦେ ବିଶ୍ୱପ୍ରାଣ ହେ,
କାନ୍ଦେ ଧରଣୀ, କାନ୍ଦେ ଗଗନ,
କାନ୍ଦେ ଚନ୍ଦ୍ର, କାନ୍ଦେ ତପନ,

ଗତରେ ସାର ଅଶ୍ରୁର ଧାର
(ତୁମ) ଅର୍ଘ୍ୟ ହେ ମହାପ୍ରାଣ ହେ,
ତୋଳିଲେ କରୁଣ ତାନ ହେ ।

---

ପ୍ରକୃତ ଶଙ୍କର ହେ,
ଲକ୍ଷ ଗୁଣରେ ମଧୁମନ୍ତ୍ର କରେ
କଣ୍ଠକୁ ବି ତୁମ କର ହେ,
ନୀରସ ଯାକୁ ବୋଲିଥାଏ ଭବ
କି ରସ ତହିଁ ବା କର ଅନୁଭବ,
ସଂସାରେ ସାନ ଯାହା ଅନୁମାନ—
ଉଚ୍ଚରେ ତାହା ଧର ହେ,
ପ୍ରକୃତ ଶଙ୍କର ହେ ।

---

ଧନ୍ୟ ତୁମର ତୁଳି ହେ,
ମର୍ତ୍ତ୍ୟେ ଅମର ବାଣୀ-ବର
ପାରେ କେ ତୁମକୁ ତୁଳି ହେ,
ସଂସାର ନବ ନର୍ତ୍ତବେ ଆଣି,
କୁହୁଟିତେ ମଧୁରଙ୍ଗେ ରସାଣି,
(ତୁମ) ଅନ୍ତର ସୁଧା— ତୃପ୍ତ ବସୁଧା
ସନ୍ତାପ ଯାଏ ଭୁଲି ହେ,
ଧନ୍ୟ ତୁମର ତୁଳି ହେ ।

---

ମର୍ମବୀଣାର ତାରେ ହେ,
ମୂର୍ଚ୍ଛନା ତୋଳି ଦେଲେ ପଦେ ବୋଲି
ଅମୃତ ପାରାବାରେ ହେ,

ସଂସାର ସାଗ୍ର ଯାଏ ପଗ୍ର ବୁଡ଼,
ମୁଗ୍ଧ ସେ ନିଜ ରୂପ ଗୁଣ ହୁଡ଼,
ମନ୍ଦ ମଧୁରେ ମଞ୍ଜୁଳ ସ୍ୱରେ
ଗାଇଲେ ସ୍ୱର୍ଗ ଦ୍ୱାରେ ଦେ,
ମର୍ମବୀଣାର ତାରେ ହେ ।

———

ଚନ୍ଦ୍ରସ୍ପେ ଦେଲେ ଟୋଳ ହେ,
ଉନ୍ମଦେ ଭବ— ଉଛାରେ ଡବ
ସଙ୍ଗୀତେ ଛୁଟେ ଗୋଳ ହେ,
ଭକ୍ତିରସରେ ବିଶ୍ୱ ମୋହିତ
ମୁକ୍ତିପଥରେ ଧରଣୀ ଧାବିତ,
ସୁପ୍ତ ମୁଁ ଜାଗି ଉଠେ ଭ୍ରମ ଲାଗି
(ଭ୍ରମ) ଅଞ୍ଜନେ ଆଖି ବୋଳି ହେ,
ଚନ୍ଦ୍ରମା ଦେଲେ ଟୋଳ ହେ ।

———

କଳ୍ପନାରଥ ଚଢ଼ି ହେ
ହୋଇଲେ ବାହାର ଶକ୍ତି ବା କାର
ଧରନେବ ପଛେ ଡଡ଼ି ହେ ?
କଳ୍ପନା ବେଳେ ବିଶ୍ୱ-ବିଜୟୀ,
ହସ୍ତ ଚକ୍ରତେ ଗୃହିଁ ରହେ ମହୀ,
ହସାଅ ରସାଅ କେତେ ଯେ ନଚ୍ଛାଅ,
କନ୍ଦାଅ ଘଡ଼ ଘଡ଼ି ହେ,
କଳ୍ପନା ରଥ ଚଢ଼ି ହେ ।

———

କଳ୍ପନା ଧନ ତବ ହେ,
'ମତ୍ତ ପାଗଳ ଚନ୍ଦ୍ରାର ଚର'—
ବୋଲଇ ତୁମକୁ ଭବ ହେ,
କର୍ମବିମୁଖ ବାକ୍ୟର ସାର'—
କହେ ସେ, ମାତର କର୍ମ ଯେ ଚର
ଫଳକେ ଲଗାଅ, ଫୁଲକେ ଜଗାଅ
ଉତ୍ସାହେ ଅଭିନବ ହେ,
କଳ୍ପନା ଧନ ତବ ହେ ।

---

କ୍ଷୁଦ୍ର ହୃଦୟ ପୁଣି ହେ,
ଶୂନ୍ୟାଭିମାନୀ ତୁମ ଶିରେ ଆଣି
ଶତ ଦୋଷ ଦିଏ ବୁଣି ହେ,
ରଚ ପଦ୍ୟ ତୁମେ ଶବ୍ଦ ଯୋଜନେ,
ମନ୍ଦର ଟଳେ ଏଣେ ଚଳନେ;
ବିଦ୍ରୂପେ ହସି ସ୍ୱର୍ଗେ ବିଳସି
ଗୃଲୁଥାଅ ତୁନ ତୁନ ହେ,
କ୍ଷୁଦ୍ର ହୃଦୟ ପୁଣି ହେ ।

---

ଦିବ୍ୟ ଅମୀୟରସେ ହେ
ସିକ୍ତ ଯେ ବହେ, ଦୈନ୍ୟ କେବେହେଁ
ଅନ୍ତରେ ନ ପରଶେ ହେ,
ଉଜ୍ଜ୍ୱଳ ପଥେ ତୁମେ ଯେ ପଥିକ,
ଜଞ୍ଜାଳ-ବିଷ ତଳେ ତୁମକୁ କି

ଧାରି ଦେବ ବଳେ ? ପ୍ରଳୟ ଅନଳେ
ମଳୟ ମନ୍ଦରେ ହସେ ହେ,
ଦିବ୍ୟ ଅମିୟ ରସେ ହେ ।

---

ମନ୍ଦାକିନୀର ନୀର ହେ,
ସନ୍ତର ଖେଳେ ନନ୍ଦନ କୋଳେ
ସଞ୍ଚର ଧୀର ଧୀର ହେ,
ଯଣ ଅପଯଶେ ଚିନ୍ତା ବା କାହିଁ ?
(ଯେବେ) ମୂର୍ଚ୍ଛନା ତୋଳ ଜଳେ ଗାଇ
ମୁଗ୍ଧ ଏ ଧରା ସେ ଭିତାନେ ପଶ
ନାଚିଯାଏ ସୁନାସୀର ହେ,
ମନ୍ଦାକିନୀର ନୀର ହେ ।

---

କବିତାରେ ପାଅ ପ୍ରାଣ ହେ,
ବ୍ରହ୍ମପଦବୀ ପାରେ ପରିଭବି
ମ[illegible] ଚବ ଗାନ ହେ
ଅଦ୍ଭୁତେ ଉଠେ ଜାଗି ଚରାଚର,
ଗଗନ, ପବନ, ବନ, ଧରାଧର,
ପ୍ରାନ୍ତର ଜାଗେ ସ୍ନିଗ୍ଧ ସରାଗେ,
ଶସ୍ୟେ ଖେଳେ ସେ ତାନ ହେ,
କବିତାରେ ପାଅ ପ୍ରାଣ ହେ ।

---

ଉଆଁସ ଜୋଛନା ରାତି ହେ,
ଶ୍ରାବଣ ବାଦଲ ଶୁଭ୍ର ଶାରଦର
(ତୁମ) ସବୁ ଯେ ସବୁଜସାଥୀ ହେ,

ସର ସରିତର ସ୍ୱଚ୍ଛ ସଲିଳ
ସୁନୀଳ ସାଗରେ ଊର୍ମି ଫେନିଳ
ସ୍ୱର୍ଗ ବାରତା (ତୁମ) ଅନ୍ତରେ ଦିଏ
ଉଲ୍‌ସାଇ ପ୍ରେମେ ସ୍ତୁତି ହେ,
ଉଆଁସ ଜୋଛନା ଗୀତି ହେ ।

---

ଊଷାର ମଧୁର ଠାଣି ହେ,
ଅପାର ପୁଲକେ ପଲକେ ପଲକେ
ଦିଏ କି ଦିବ୍ୟବାଣୀ ହେ,
ସୃଷ୍ଟି ତୁମର ନିତ୍ୟ ନୂତନ,
ଦୃଷ୍ଟି ତୁମର ଅତୁଳ ରତନ
ଅତଳ ବାରିଧି— ଗର୍ଭରୁ ନିଧି
ସନ୍ଧାନ ଆଣେ ଟାଣି ହେ,
ଊଷାର ମଧୁର ଠାଣି ହେ ।

---

ସଂସାର-ଗୁରୁ ତୁମେ ହେ,
ବିଶ୍ୱ କବିର ଅଂଶୀହିଁ ଶିର
ତୁମଠି ଏ ମର-ଭୂମେ ହେ;
ଲିପ୍ତ ଜଡ଼ତା-ତମିରେ ଜଗତ
ଦୀପ୍ତ ତୁମର ବାକ୍ୟେ ସତତ,
ଦୃପ୍ତ ଦିବର ମୋହ-ମୁଦ୍‌ଗର
ହାତେ ହାତେ ଧର ତୁମେ ହେ,
ସଂସାର-ଗୁରୁ ତୁମେ ହେ ।

---

# ବିଶ୍ୱଜୀବନ ସେ ଯେ

( ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର, ଏମ୍. ଏ., ଡ଼. ଇଡ଼. )

( ବାପୁଜୀଙ୍କ ମହାପ୍ରୟାଣ ପ୍ରସଙ୍ଗରେ ରଚିତ )

ସରଗେ ବିରଳ ସତ୍ୟ ଶାନ୍ତ ପୀରତିର ମଧୁଧାର,
ଉଚ୍ଛୁଳିଲା ଯା'ର ପରାଣେ ଚରଣେ ଭସାଇ ବିଶ୍ୱସାର,
ଜାଗିଲା ରେ ଯା'ର ଶବ କାହିଁଶାପରଶେ ପଲକେ ଉଠି
ଲାଗିଲା ଧରଣୀ କର୍ମିଙ୍କବନେ କଳ୍ପ ଗଲା ଛୁଟି,
ଅଭିନବ ମହାବାଜକର ସେ ଯେ ମନ୍ଦ୍ର ଗମ୍ଭୀର ନାଦେ
ମନ୍ତ୍ର ରଚିଲା କବା କଉଶଳେ, ଦେବତା ହାରିଲେ ବାଦେ;
ରାକ୍ଷସ କୋଟି ଗୃହାଣିରେ ଖାଲି ଦଣ୍ଡେ ହୋଇଲେ ବଶ,
ଗଗନେ ପବନେ ଭୁବନେ ଭୁବନେ ସଂଚରିଗଲା ଯଶ,

ବିଶ୍ୱ ମୋହନ ସେ ଯେ

ଲକ୍ଷ ତପନ ଲୁଚିଯାଏ ଲାଜେ, ଯାଏ ତାହାର ତେଜେ ।
ସୃଷ୍ଟି ବାହାର ଦୃଷ୍ଟି ଯାହାର ଚେତାଇଲା ଗୃହୁଁ ଗୃହୁଁ,
ପ୍ରଳୟ ଝଞ୍ଜା ବତାସେ ରଚିଲା ସ୍ନିଗ୍ଧ ମଳୟ ବାୟୁ,
ସ୍ୱଚ୍ଛ ସରଳ ସରସତା ଯା'ଠୁଁ ନିଃସରି ହୃଦେ ହୃଦେ
ପାଗଲ କଲା ରେ ମାନବଜାତିକ ଦୁର୍ବାର ମଦେ ମୁଦେ;
ଧୈର୍ଯ୍ୟ ବଳଇ ମନ୍ଦର ମେରୁ, ଯାହାରେ ହସି ବରେ
ଅଭିଯାନେ ଯାର ହିଂସା ବଇରୀ ଭର୍ତ୍ସିତେ ପଡ଼ି ମରେ,
ଦମ୍ଭେ ହସଇ ଦମ୍ଭୋଳି କି ଯେ ଅନ୍ତକ ତାର ଠାଣି
ଭାଙ୍ଗିବ କାହୁଁ ? ବନ୍ଧନେ ସେ ଯେ ପୂରାଇ ପାରେ ତା ମାଣ

ବିଶ୍ୱନାୟକ ସେ ଯେ ।
ଶଙ୍ଖ ବାଜେ ତା; ବାଜୁଥିବ ଚିର ଶୁଆଇ ନ ଦେବ ଶେଯେ ।

ବିଶ୍ୱହୃଦର ଦୁଃଖ ପୀଡ଼ାରେ ଦୁଃଖୀ ଯେ କାଳେ କାଳେ
ବିଶ୍ୱପାଇଁ ଯେ କର୍ମପାଗଳ ମର୍ମରୁ ଲହୁ ଢ଼ାଳେ,
ବିଶ୍ୱବାସୀର ଉଦ୍ଧାର ପାଇଁ ଜୀବନ ଯେ କରେ ପଣ,
ବିଶ୍ୱମାନବ କଲ୍ୟାଣେ ବରେ ଦୁଃଖ ଯେ ପଣ ପଣ,
ବିଶ୍ୱପ୍ରଗତି ଶାନ୍ତି ଟଳିଲେ ଯନ୍ତ୍ରଣେ ପଡ଼େ ଟଳି,—
ବିଶ୍ୱଭବନେ ନିଃସ୍ୱ ନ ରହି ଭୁଞ୍ଜି ବଡ଼ ସ୍ଥାନ କଳି,
ବିଶ୍ୱମୁକତି-ରମ୍ୟ-ଦୁଆର ରୁଦ୍ଧ ନ ହେଉ କ୍ଷଣେ,
ବିଶ୍ୱରେ କେହି ଦଳିତପତିତ ଲକ୍ଷ୍ମୀ ତ ନୋହୁ ଜଣେ,

ବିଶ୍ୱଧିଆନ ଯାର,
ବିଶ୍ୱ ତାହାକୁ ହରାଇବ କାହୁଁ ? ହେବାପାଇଁ ଛାରଖାର ?

ବିଶ୍ୱାସ ଯାର ଜୀବନ ମନ୍ତ୍ର ସତ୍ୟସାଧକବର
ପୀରତି, ମୈତ୍ରୀ, ସାମ୍ୟ, ସୁନୀତି ଯାହା ତା ହୃଦସ୍ୱର,
ଅନ୍ତର ଛୁଟି ଦୁଃଖୀ ସେବାର ମନ୍ଦାକିନୀ ଯା ଧାଏଁ
ଦୁର୍ଦ୍ଦମ ବେଗେ ସଙ୍କଟଶିଳା-ସରଣୀରେ ଗୀତ ଗାଏ;
ସାଧନ ଶୁଦ୍ଧ ବୁଦ୍ଧ ମୂରତି, ମମତାର ବଳେ ବଳୀ
ସଂସାରି ସାରା ନିଜର ବୋଲି ଯେ ଚିରକାଳ ନିଏ କଳି,
ବର୍ଣ୍ଣବିଭେଦ ଭୁଲାଇ ହେଳେ ଯେ ବିଶ୍ୱକୁ କରେ କୋଳ,
ମାନବ ଜାତିର ପିଣ୍ଡେ ପରାଣ, ଯେ ହିଁ ଜେ ମମତା ଡୋର,

ସେ କି ହେବ ପ୍ରତିହତ
କାଳେ କାଳେ ଯେ ରେ ବିଶ୍ୱବିଜୟୀ ଅନ୍ତକ ଆଗେ ନତ ?

ଯୁଗ ପରେ ଯୁଗ ବହି ଚାଲିଥିବ; ସଂସାର ଘୋର ବାଆ
ପ୍ରଳୟ ବାଦଲ ଅମା ଅନ୍ଧାରେ ହଜିଯାଉ ପଛେ ରାହା,
ହଜି ନ ଯିବ ଏ ଦୁର୍ଜୟ ବୀର, ନୁହେ ସେ ମାନବ ମର,
ଭାଜି ନ ପଡ଼ିବ ବାପୁଜୀ ଦଣ୍ଡେ ଧାଇଁଥିବ ଖରତର,
ଶାନ୍ତି-ନିଶାଣ ଚାଲିଥିବ ଟେକ ରଖି ସେ ବିଶ୍ୱ ଟେକ,
ଦୁଃଖପୀଡ଼ିତ ବିଜୟେ ଥିବ ତା ଉନ୍ନତ ଶିର ବେକ,
ବିଶ୍ୱପୀରତି ଦେଶେ ଦେଶେ ତାର ତୋଳି ଧରିଥିବ ବାନା,
ଯୁଗେ ଯୁଗେ ସେ ଯେ ଉଚ୍ଚେ ଡାକିବ,—ବିଶ୍ୱ, ବିପଥେ ଯା ନା;
ବିଶ୍ୱଜୀବନ ସେହି ସେ,
ଚାଲ ରେ ମାନବ, ଅନୁସରି ତାକୁ ଉଜ୍ଜ୍ୱଳ ତାର ତେଜେ ।

---

# ଦିଲ୍ଲୀ

(ଅଧ୍ୟାପକ ଡକ୍ଟର ବଂଶୀଧର ସାମନ୍ତରାୟ ଏମ୍.ଏସ୍‌ସି.,ପି.ଏଚ୍.ଡି.)

ରାଜଧାନୀ ଦିଲ୍ଲୀ ସମ୍ମୁଖେ ମମ,
ରାଜେ କିବା ଆଜି— ହାସିକି ସମ ।
ଟାଣି ନିଏ ମନ ଯୁଗ ପୁରାଣେ,
ଆଙ୍କଇ ପ୍ରାଚୀନ ଛବି ପରାଣେ ।
ହସ୍ତିନାର ସେହି ପୁରାଣ ଛବି,
ଅମର ବର୍ଣ୍ଣେ ଯା ରଚିଲେ କବି ।
ଇନ୍ଦ୍ରପ୍ରସ୍ଥର ସେ ଗୁରୁ ସୁଷମା
ପରୀକ୍ଷିତ ଯହିଁ, କବି-କଳ୍ପନା ।
ଖୁଲିଯାଏ ଆଜି ନୟନ ଆଗେ,
ରଞ୍ଜିତ କି ଅବା ନବୀନ ରାଗେ ।
ଦେଖଇ ମୁଁ ଆଜି ମୁଗ୍ଧ ନୟନେ,
ଅତୀତର ଦୃଶ୍ୟ ସ୍ୱପ୍ନ-ଭୁବନେ—
ଅସ୍ତ୍ର ଶସ୍ତ୍ର ଶିକ୍ଷା ସକଳ କେଳି,
ରାଜସୂୟ ଯଜ୍ଞେ ରାଜନ୍ୟ ମେଳି ।
କପଟପାଶାର କପଟ ଜାଲ,
ପାଣ୍ଡୁନନ୍ଦନଙ୍କ ଦୁର୍ଯୋଗମାଳ ।
କୃଷ୍ଣା ଅପମାନେ, ପ୍ରାର୍ଥନା ବଳେ
ସ୍ୱଧର୍ମ ଦୁଃ ବନ୍ଧୁ ଆସନ ଟଳେ ।
ଦୁଃଶାସନ ଯେତେ ଓଟାରେ ବାସ,
ତେତେ ବାସ କୃଷ୍ଣା ଅଙ୍ଗେ ପ୍ରକାଶ ।
କୁରୁକ୍ଷେତ୍ରେ ଏଣେ ବାଜଇ ବାଦ୍ୟ,
ଲାଗିଅଛି ଘୋର ସମର ସଜ୍ଜ ।

କପିଧ୍ୱଜ ରଥେ ଅର୍ଜ୍ଜୁନ ରଥୀ,
ଯୋଗେଶ୍ୱର କୃଷ୍ଣ ତାର ସାରଥି ।
ତତ୍ତ୍ୱ ବ୍ୟାଖ୍ୟା ଗାଇ ସେ ଶୀରଗ୍ରଣୀ
ଅର୍ଜ୍ଜୁନେ ଦେଖାନ୍ତ ତତ୍ତ୍ୱ-ସରଣୀ ।
ଜ୍ଞାନଲୋକେ ଯାନ୍ତ ଅର୍ଜ୍ଜୁନେ ଆଜ
ଦେଇଛୁ ଭୂମିକ ସଂଗ୍ରାମ ସାଜ ।
ଶରଶେଯେ ଆଜ ଭୀଷ୍ମ ଶାୟିତ,
ଦ୍ରୋଣ ଗୁରୁ ଆଜ ଭୂମି ଆଶ୍ରିତ ।
କର୍ଣ୍ଣଶିର ସ୍କନ୍ଧୁ ପଡ଼ିଛି ଖସି,
ଦୁଃଶାରକ୍ତ ଭୀମ ପିଉଛି ହସି ।
ଦୁର୍ଯ୍ୟୋଧନ ଊରୁ ଯାଇଛି ଭାଙ୍ଗି,
ବାନ୍ଧଇ କବରୀ କୃଷ୍ଣା ଶ୍ୟାମାଙ୍ଗୀ ।
ବିଜୟ ଦୁନ୍ଦୁଭି ବାଜେ ସଘନେ,
ଭାରତେ ସମ୍ରାଟ ପାଣ୍ଡୁ ନନ୍ଦନେ ।
ଯୁଗ ଯୁଗାନ୍ତର ଯାଇଛି ବହି,
ସାକ୍ଷୀତାର ଏବେ ଯମୁନା ନଈ ।
ଯାଇଛି ହସ୍ତିନା ତା ସ୍ଥାନେ ଦିଲ୍ଲୀ
ଇନ୍ଦ୍ରପ୍ରସ୍ଥ ଭୂମେ ଯାଇଛି ମିଳି ।
ଦିଲ୍ଲୀ ସିଂହାସନେ ଆଜ ଅଧିପ
ପୃଥ୍ୱୀରାଜ ବୀର ଚୌହାନ ଭୂପ ।
ଜୟଚନ୍ଦ୍ର ଆଜ କନୌଜପତି
ଦିଲ୍ଲୀ ପଦେ ସେ ତ ନ କରେ ନତି ।
ଦିଲ୍ଲୀଶ୍ୱରେ ନିନ୍ଦା କରିବା ପାଇଁ
ସ୍ଥାପିଛି ପ୍ରତିମା ତୋରଣ ଠାଇଁ !

ଆମନ୍ତ୍ରିତ ବନ୍ଧୁ ରାଜନ୍ୟବର,
ନନ୍ଦଘୋର କରେ ଯେ ସ୍ୱୟମ୍ବର ।
ସଂଯୁକ୍ତା କନୌଜ— ରାଜ ଦୁଲଣୀ
ବରେ ପୃଥ୍ୱୀରାଜେ ପରାଣ ମଣି

ଲମ୍ବାଇଣ ମାଳ ପ୍ରତିମା ଗଳେ
ନ ଦେଖି ଦିଲ୍ଲୀଶେ ସେ ସଭାସ୍ଥଳେ ।
ଅନ୍ତରାଳୁ ଆସି ଦିଲ୍ଲୀ ରାଜନ
ପ୍ରିୟାରେ ବସାନ୍ତେ ଅଶ୍ୱେ, ବନ୍ଦନ ।
ଦିଲ୍ଲୀ ପଥେ ଆଜ ଧାଇଁଲା ବାଜୀ
ଲଙ୍ଘି ନଦୀ-ବନ- ପର୍ବତ-ରାଜି ।
ଜୟଚନ୍ଦ୍ର ଜୟ କରିଛି ପଣ
ଦିଲ୍ଲୀଦ୍ୱାରେ ତେଣୁ ଲାଗିଛି ରଣ ।
ଆମନ୍ତ୍ରି ଆଣିଛି ଯବନପତି
ନେବ ବୋଲି ପଦେ ଦିଲ୍ଲୀଶ-ନତି ।
ଦିଲ୍ଲୀସେନା ଆଜ ହାରିଲେ ରଣେ
ବିଜୟେ ଉତ୍ଫୁଲ୍ଲ ଯବନଗଣେ ।
ଜୟଚନ୍ଦ୍ରେ ରାଜ୍ୟ ଦେଲେଣି ତଡ଼ି
କୁଳାଙ୍ଗାର ମଲା ଗଙ୍ଗାରେ ଚଡ଼ି ।
ଭାରତେ ଆସିଲା ଯବନରାଜ,
ପିନ୍ଧିଲା ଏ ଦିଲ୍ଲୀ ନବୀନ ସାଜ ।
କୁତବମିନାର ଟେକିଲା ଶିର
କୁମାରେ ଶୁଭିଲା କୋରାନ ଗିର ।
କାଶ୍ମୀର-ଫାଟକ ଟେକିଲା ମୁଣ୍ଡ ।
ମୋଗଲ ଗୌରବ ହେଲାଟି ରୁଣ୍ଡ

ଦିଲ୍ଲୀଦୁର୍ଗ ଦୃଢ଼େ ଉଠିଲା ଗଢ଼ି
ମୋଗଲ ସାମ୍ରାଜ୍ୟ ଗଲାଟି ବଢ଼ି !
କେତେ କେତେ ଛବି ଉଠିଲା ଫୁଟି,
ହେଲା କେତେ କେତେ ନବୀନ ସୃଷ୍ଟି ।
କାଳସ୍ରୋତେ ପୁଣି ଗଲାଟି ଭାସି
ଦିଲ୍ଲୀ ନଗରୀର ସୌଭାଗ୍ୟ ରାଶି ।
ବୁଡ଼ିଗଲେ ମୋଗଲ ସୌଭାଗ୍ୟ ରବି;
ନ ଫୁଟିଲା ଆଉ ନୂତନ ଛବି ।
ଆସିଲା ଭାରତେ ବ୍ରିଟିଶ ରାଜ
ପୁଣି ତ ଦିଲ୍ଲୀର ନବୀନ ସାଜ ।
ନବ ରାଜଧାନୀ ଆସିଲା ପୁଣି
ସରସିଲା ଦିଲ୍ଲୀ ସେ ବାଣୀ ଶୁଣି ।
ନବ ଇନ୍ଦ୍ରପ୍ରସ୍ଥ ଗଢ଼ି ଉଠିଲା
ନବ ରାଜସୂୟ ପୁଣି ବସିଲା ।
ପାଇଲା ଏ ଦିଲ୍ଲୀ ନବୀନ ଶିରୀ,
ବଜାଇଲା ପୁଣି ବିଜୟ ଭେରୀ ।
ଉତ୍ଥାନ ପତନ ଜୀବନେ ତାର
ଟାଣିଛନ୍ତି ପରା ସୁଦୃଢ଼େ ଗାର ।
ଆଜ ବି ତାର ଏ ନବୀନ ସାଜେ,
ପ୍ରାଣେ ସେ ଅଜ୍ଞାତ ରାଗିଣୀ ବାଜେ
କହେ ତା ଉତ୍ଥାନ- ପତନ-ବାଣୀ
ରାଜଧାନୀ ଦିଲ୍ଲୀ ନଗରୀରାଣୀ ।

---

# ତାରାମୟୀ

( ଅଧ୍ୟାପକ ଶ୍ରୀ କୁଞ୍ଜବିହାରୀ ଦାସ, ଏମ୍. ଏ. )

( କ )

ଏକ ପରମାତ୍ମା ପ୍ରଭା ଖଣ୍ଡ ଖଣ୍ଡ ଭାସେ
ତାରାରୂପେ ନନ୍ତ ନଶା ଅନ୍ଧାର ଆକାଶେ ?
ନଭ-ସରୋବର ଉର ଅନ୍ଧକାର-ଜଳେ
ଫୁଟାଏ କେ ତାରା ଶତଦଳ କୁତୂହଳେ ?
ଏ କ ଜ୍ୟୋତି ଢଳ ଢଳ ଦେବତା-ନୟନ
ସ୍ୱରଗୁଁ କରଇ ଦୟା-ଆଶିଷ ବର୍ଷଣ ?
ଏ କ ପୁଣ୍ୟ ଋଷିଦଳ ଆସୀନ ଆକାଶେ,
ତପସ୍ୟା କରନ୍ତ ବିଶ୍ୱମଙ୍ଗଳ ସକାଶେ ?
ମହାତ୍ମାର ଧର୍ମ ଜ୍ୟୋତି ତଳେ ତଳେ ଉଠି
କରିଛି କ ଏ ସୁନ୍ଦର ତାରା-ମୋତି ସୃଷ୍ଟି ?
ରଜନୀ-ଦେଉଳେ ତାରା-ଦୀପାବଳି ଜାଳି
ପ୍ରକୃତି ପୁରୁଷେ ପ୍ରେମ ବସିଛି କ ଭାଳି ?
କାହିଁ ଏତେ ତାରାସୃଷ୍ଟି ? ଜାଗେ ପ୍ରଶ୍ନ ମନେ
ତାହା କ ବିଶେଷ ସୃଷ୍ଟି ସୁନ୍ଦର କରଣେ ?

( ଖ )

ଏ ସୌନ୍ଦର୍ଯ୍ୟ ନାହିଁ କ ହେ ସତ୍ୟର ଆଭାଷ ?
ଶୋଭା-ଜ୍ୟୋତି ଦଳ ମିଥ୍ୟା-ଅନ୍ଧାର ଆବାସ

'ମୁଁ ଅଛି', ଏ ସତ୍ୟ କହେ ତାର ଜ୍ୟୋତିଠାରେ ।
ପୂରେ ବିଶ୍ୱ ତାର-ବାଣୀ ନୀରସ ଝଙ୍କାରେ
ଏ ସତ୍ୟେ ଝଟକେ ଶୋଭା ଫୁଲେ ଯଥା ରେଣୁ
ରେଖା-ଚିତ୍ରେ ରଙ୍ଗ ଯଥା, ସ୍ୱର୍ଗେ କାମଧେନୁ ।
ମାନବର ଭାଗ୍ୟ ଚିର ଉଜ୍ଜ୍ୱଳଇ ତାର,
ସତ୍ୟ ଶୋଭା କ୍ଷେତ୍ରେ ବହେ ମଙ୍ଗଳର ଧାର ।
ସତ୍ୟ ଶୋଭା ପଦ୍ମେ ଗୂରୁ ଅମୃତ ଆନନ୍ଦ,
ତାରଭର ନଭ ହେବ କେ ନୁହେ ଗଦ୍‌ଗଦ ?
ସତ୍ୟ ସେତୁ ବାନ୍ଧ ମହା ଅକୂଳ ସାଗରେ,
ବିଶ୍ୱର ମନ୍ଦିର, ବନ୍ଧ, ତୋଳନ୍ତି ସାଦରେ ।
ମଙ୍ଗଳର ମହାଦୀପ ଚୂଳେ ତାର ଜାଳ
ଦେହେ କାରୁକଳାମୃତ ଦେଇଅଛ ଢାଳ ।

---

# ଭୁଲିବି କି

( ଶ୍ରୀମତୀ ଅପର୍ଣ୍ଣା ଦେବୀ—କବିତା କଳ୍ପଲତା )

ବୀର୍ଯ୍ୟ ବିକ୍ରମେ ସୂର୍ଯ୍ୟ ସଦୃଶ
ଶୌର୍ଯ୍ୟ ସୌର୍ଷେ ଯା ପୋଏ ମାତ
ଆର୍ଯ୍ୟଭୂମିର କାର୍ଯ୍ୟ ସାଧିଲେ
ଧୈର୍ଯ୍ୟ ସାହସେ ଦଗଣ ପାତ,
ଅକ୍ଷୟ କୀର୍ତ୍ତି ଅକ୍ଷୟ ଦୀପ୍ତି
ଅକ୍ଷୟେ ଥାପି ଅବନୀ ପର,
ଭୁଲିବି କି ସେହି ମହାପୁରୀ ମହୀ
ଉତ୍କଳ ଜନନୀ, ଅଟୁ ଆମର ? । ୧ ।
ବୀର ବୀରତ୍ୱେ ଖ୍ୟାତ ଜଗତେ
ଯା ବୀରପୁତ୍ରେ ଶରବନ୍ଦିତ,
ଯା ତୂର୍ଯ୍ୟଘୋଷେ ଛନକା ତ୍ରାସେ
ବଇରୀ ବୁକୁ ହୁଏ କମ୍ପିତ,
ଶତ୍ରୁ ନିପାତ ମାତୃ ବ୍ରତେ ଯେ
ମରଣେ ବରି ହେଲେ ଅମର,
ଭୁଲିବି କି ସେହି ମହାପୁରୀ ମହୀ
ଉତ୍କଳ ଜନନୀ, ଅଟୁ ଆମର । ୨ ।
କଳାକୁଶଳେ ଯା'ର କୁମରେ
ଝଲସାଇଲେ ଅଖିଳ ଧରା,
ଶିଳ୍ପଶୃଙ୍ଗର୍ଯ୍ୟ ସୁଷମା ରାଜି
ଆର୍ଯ୍ୟଗୌରବ ମୁକୁଟ ପରା !

ବିଶ୍ୱକେ ବକ୍ଷେ ଯା'ର ପ୍ରତ୍ୟକ୍ଷେ
ପୁରୀ କୋଣାର୍କ ଭୁବନେଶ୍ୱର,
ଭୁଲିଛି କି ସେହି ମଞ୍ଜୁଷୀ ମଞ୍ଜୁ
ଉତ୍କଳ ଜନନୀ, ଅଟୁ ଆମର ? । ୩ ।
ସାଗର ବୁକୁ ଚିରି ଯା' ପୋଏ
ତରଣୀ ବାହି ଅକୁଳୋତ୍ସାହେ
ଦେଶ ଦେଶାନ୍ତେ ବଣିଜ ଅର୍ଥେ
ବ୍ୟାପିଲେ ଦୁରନ୍ତେ ବିଦ୍ୟୁତ ପ୍ରାୟେ,
ଯା ଭାଗ୍ୟବାଣୀ ଥିଲା ଆକର୍ଷି
ମାନସରସ ଇତରଙ୍କର
ଭୁଲିଛି କି ସେହି ମଞ୍ଜୁଷୀ ମଞ୍ଜୁ
ଉତ୍କଳ ଜନନୀ, ଅଟୁ ଆମର ? । ୪ ।
ଉତ୍କଳ ରାଣୀ ଉତ୍କଳ ବାଣୀ
ଗୌରବମଣି—ହୀରା ସମାନେ,
ଅମର୍ତ୍ତ୍ୟଶରେ ନାମ ରଖିଲେ
କାଳବକ୍ଷରେ ଯା'ର ସନ୍ତାନେ,
ସାହିତ୍ୟ ରମ୍ୟ ସୁମନଦାମେ
ଭରି ଭାରତୀ-ଭାଷା-ଭଣ୍ଡାର,
ଭୁଲିଛି କି ସେହି ମଞ୍ଜୁଷୀ ମଞ୍ଜୁ
ଉତ୍କଳ ଜନନୀ, ଅଟୁ ଆମର ? । ୫ ।
ଗୋଦାବରୀରୁ ଜାହ୍ନବୀ ଯାଏ
ଯା'ପୋଏ ଏକଛତ୍ରାଧୀଶ୍ୱର
ଦର୍ପଭରେ ଯା ଜାତୀୟ ଧ୍ୱଜା
ଉଡ଼ିଲା ବ୍ୟାପି ବିଶ୍ୱ ଅମ୍ବର

ଏଣିକି କି ମାଗୋ ତୋର ସେ ସୁଆଗ
ସଙ୍ଗାଳି ସୁତଙ୍କ ଶୋଣିତ ଧାର,
ଭୁଲିବି କି ସେହି ମହାପୁରୀ ମଝି
ଉତ୍କଳ ଜନନୀ, ଅଛୁ ଆମର ? । ୭ ।

---

## ବାହୁଡ଼ା ବିଜୟ *

( ଶ୍ରୀ ଚନ୍ଦ୍ରଶେଖର ମିଶ୍ର ବି· ଏ· ବି· ଏଲ., ଡ଼ି· ଇଡ଼୍ )

( ୧ )

ଜୀବନର ରଣ ଶୁଝି
ରଣଭୂମେ ଯୁଝି ଯୁଝି
ପଡ଼ିଗଲ ଚଳେ ଆଜ ସଂଗ୍ରାମ-କେଶରୀ
ତାହାର ଜନମ ମାଟି
ଯାଇଅଛି ଆଜ ଫାଟି
ମାଆ କୋଳ ଶେଷେ ଧୀର ନେଇଅଛି ବରି ।

( ୨ )

ଶୋଇଗଲ ଐରାବତ
ହିମାଳୟ ପରବତ,
ଶୁଖିଗଲ ଶେଷେ·ତାର ଶାଶ୍ୱତ ଝରଣ,
ଯାଇଛି ଅମରଧାମେ,
କିଏ ପିନା ମୃତ୍ୟୁ ନାମେ,
ବାହୁଡ଼ା-ବିଜୟ ତାର, ନୁହଇ ମରଣ ।

( ୩ )

ଅମର ମରଣ ଯାର
ନାହିଁ ନାହିଁ ମୃତ୍ୟୁ ତାର
ସବୁର ହୃଦୟେ ଆଜ ରହିଛି ସେ ବସି,

---

* ଉତ୍କଳର ପ୍ରଧାନତମ ଜନନାୟକ କୁଳବୃଦ୍ଧ ମାନ୍ୟବର ମଧୁସୂଦନ ଦାସଙ୍କ ବିୟୋଗେ ।

ତା’ ଦେଶର ଜଳବାୟୁ
ରଖିଲା ତା ଅସ୍ଥି ସ୍ନାୟୁ;
ନ ଛୁଇଁବ କାଳ ତାକୁ, ନ ଛୁଇଁବ ମସୀ ।

( ୪ )

ଉଠାଇଲା ଗିରିଶୃଙ୍ଗ
ତୋଳିଲା ଦେଉଳ ତୁଙ୍ଗ
ତୋଳିଗଲା ‘ପିରାମିଡ୍’, ‘ତାଜ’ ନିଜ ଦେଶେ
ବିଜୟ-ନିଶାଣ ହାତେ
ବୁଲିଛି ସେ ବିଶ୍ୱ ସାଥେ,
ଭଜିଛି ବିଶ୍ରାମ ଶିର କରମର ଶେଷେ ।

( ୫ )

ଉଠାଅ ନା’ ତାକୁ ବେଳେ
ଶୋଇଛି ସେ ମାଆ କୋଳେ
ଶାନ୍ତ ଏବେ ଲୋଡ଼ା ତାର ହୋଇଛି ଜୀବନ,
ନିଦ୍ରାଅନ୍ତେ ଆର୍ଯ୍ୟବର
ତୋଳିବ ତା’ ମଧୁସ୍ୱର,
ବଜାଇବ ଶତ ଭେରୀ ଭୁବନେ ଭୁବନେ ।

( ୬ )

ଆଜ ହେ ପଥିକ ! ତୁମେ
ଯାଉଛ ସଂଗ୍ରାମ-ଭୂମେ
ଦେଇଥାଅ ଖାଲି ପ୍ରାଣ-ପୀରତି ଚନ୍ଦନ,
ସିକ୍ତ କରି ଶଯ୍ୟା ତଳ
ନ ଢାଳିବ ଅଶ୍ରୁ ଜଳ,
ମନେରଖ, ଖାଣ୍ଟିର ଏ ଶରଚ-ଶୟନ

( ୭ )

ଅବେଗେ ଆଗ୍ରହେ ତାଙ୍କୁ
ଉଠାଇଲେ ଉଠିବାକୁ
ଉଠିଥାଏ, ଉଠିବ ସେ ନଦ୍ରା ପରିହରି,
ନଜ ଦେଶ ମାଆ ଭାଇ—
ତାଙ୍କର ଅଭାବ ଗୁହାଁ,
ଉଠିବ ଉଠିବ ପୁଣି ଉତ୍କଳର ନର ।

( ୮ )

ସେ ଲୁହେଁ ବଧିର ଗିର,
ଦେଇ ପାରେ ହୃଦ ଚିର,
ପାବକ-ଭୂଷାରେ ତାର ଗଠିତ ଜୀବନ,
ତେବେ କପାଁ ଦୁଃଖ ଆଉ,
ମହାରଥୀ ଶୋଇଥାଉ,
ନ କର ତା ପାଶେ ବସି ଆତୁର କ୍ରନ୍ଦନ ।

( ୯ )

ଆସ ଆର୍ଯ୍ୟ ବଂଶଧରେ,
ପରଶ ତା ପଦ ଥରେ
ଅର୍ଘ୍ୟରୂପେ ଦଅ ତାଙ୍କୁ ରାଜାର ସମ୍ମାନ,
ଫେରିଯାଅ ଧୀରେ ଧୀରେ
ବନ୍ଦି ନେଇ ନତ ଶିରେ
ମୃତ୍ୟୁହୀନ ପ୍ରାଣ ତାର ଜୀବନର ଦାନ ।

# ଜୟଦେବ

( ଶ୍ରୀ ଗୋପୀମୋହନ ଗଡ଼ନାୟକ )

ଭାରତର କାନ୍ତ-କବି ପ୍ରେମିକ-ବୈଷ୍ଣବ
ଜୟଦେବ ଦେଇଅଛ ଅମର ବୈଭବ,

ସୁଧା ଶିଖା ତାପଦଗ୍‌ଧ ଏଇ ବସୁଧାରେ
ବେଣୁ-ତାନ ଶୁଣାଇଛ ବୀଣାର ଝଙ୍କାରେ ।

ମଧୁର ବଧୁର ତବ ରସର ଇଙ୍ଗିତ
ସରଳ ତରଳ ତବ ଛନ୍ଦବନ୍ଧ ଗୀତ ।

ଶ୍ୟାମଳ କୋମଳ ତବ କାନ୍ତ ପଦାବଳି
ଅମର ଅନନ୍ତ ତବ ପ୍ରେମର କାକଳି ।

ସଲିଳ-ସମ୍ଭାରେ ଯଥା ଆହେ କବିବର
ଗଢ଼ି ଉଠେ ଶ୍ୟାମସ୍ନିଗ୍‌ଧ ଘନ ମନୋହର ।

ଘନ-ପ୍ରେମ-ରସେ ତଥା ଅରୂପ ଅନନ୍ୟ
ଗଢ଼ି ଉଠିଅଛି ତବ ଏ ଗୀତଗୋବିନ୍ଦ ।

ଜୀବନ ଉଛଳା ତହୁଁ ରସ ପଡ଼େ ସ୍ରବି
ଭକତ ପରାଏ ମୋହିତ ମୁଁ ବିଦଗ୍‌ଧ କବି ।

---

( ୭ )

ଆବେଗେ ଆଗ୍ରହେ ତାଙ୍କୁ
ଉଠାଇଲେ ଉଠିବାକୁ
ଉଠିଥାଏ, ଉଠିବ ସେ ନିଦ୍ରା ପରିହରି,
ନିଜ ଦେଶ ମାଆ ଭାଇ—
ତାଙ୍କର ଅଭାବ ଭୁଲି,
ଉଠିବ ଉଠିବ ପୁଣି ଉତ୍କଳର ହରି ।

( ୮ )

ସେ ନୁହେଁ ବଧିର ଗିରି,
ଦେଇ ପାରେ ହୃଦ ଚିରି,
ପାବକ-ଭୂଷାରେ ତାର ଗଠିତ ଜୀବନ,
ନେବେ କପାଁ ଦୁଃଖ ଆଉ,
ମହାରଥୀ ଶୋଇଥାଉ,
ନ କର ତା ପାଶେ ବସି ଆତୁର କ୍ରନ୍ଦନ ।

( ୯ )

ଆସ ଆର୍ଯ୍ୟ ବଂଶଧରେ,
ପରଶ ତା' ପଦ ଥରେ
ଅର୍ଘ୍ୟରୂପେ ଦିଅ ତାଙ୍କୁ ରାଜାର ସମ୍ମାନ,
ଫେରିଯାଅ ଧୀରେ ଧୀରେ
ବନ୍ଧି ନେଇ ନତ ଶିରେ
ମୃତ୍ୟୁହୀନ ପ୍ରାଣ ତାର ଜୀବନର ଦାନ ।

---

/ ୨ / ୬୬ . ୮

# ମାଟିର ମଣିଷ

( ଶ୍ରୀ ରାଧାମୋହନ ଗଡ଼ନାୟକ )

ଯନ୍ତ୍ର ଡଳେ କି ମନ୍ତ୍ର ଦେଇଛି ମାଟିର ମଣିଷ ଆରେ
ମୁଗ୍‌ଧ ତୋହର ଚିତ୍ତ ଶବଦେ ଚିନ୍ତି ପାରୁନୁ ବାରେ ?
ମଥା ତୋଳି ସେଇ ଯନ୍ତ୍ର ଯେ ସଦା ରୁଦ୍ର ଦାନବ ଯଥି
ଛିଡ଼ା ହୋଇଅଛି ଗୃହପାଶେ ତାର ଲୁହାର ପଞ୍ଜରା ଧରି ।
ଗର୍ଜି ଉଠୁଛି ଥରେ ଥରେ ପୁଣି ଭୀମ ଭୈରବ ରବେ
ନିଶ୍ୱାସ ଧୂମ ଉଚ୍ଛ୍ୱାସ ତାର ଉଡ଼ଇ ନୀଳ ନଭେ ।

ଦେଖି ପାରୁନୁ କି ତୁ ରେ,
ଚିହ୍ନି ପାରୁନୁ ବହ୍ନି ଶିଖା ଯେ ଜଳୁଛି ତାହାର ମୂଳେ ।

ମଳିନା ଏ ମାଟି ତୋହର ମା' ଟି ଜୀବନଧାତ୍ରୀ ତୋ'ର
ଜନ୍ମରୁ ଏଡ଼େ ରହିଚି ଦିବସ ରଜନୀ ସଞ୍ଜ ଭୋର ।
ବିପୁଳ ଏହାର ସ୍ତନ୍ୟ ଦାନେ ରେ ଅତୁଳ ଏହାର ସ୍ନେହେ
ପୁଷ୍ଟ ହୋଇଛି ଅଙ୍ଗ ତୋହର ବର୍ଣ୍ଣ ଫୁଟିଛି ଦେହେ ।
ଏ ତୋର ମା'ଆର ବକ୍ଷ-ଉଚ୍ଛଳା ଗର୍ବର ସେନେହ ଭୁଲି
କେଉଁପରି ଆଜ ଭରସା କରିଚୁ ଯନ୍ତ୍ରଚିତାର ଚୁଲି ।
ଅନା ଅନା ଫେରି ଥରେ
ଅନା ଅନା ତୋର ଦୃଷ୍ଟି ଫେରାଇ ମଳିନ ଏ ମାଟି ପରେ ।